ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଅହମିକା ଓ ଭ୍ରାନ୍ତି

[ ଜେନ୍ ଅଷ୍ଟିନ୍‌ଙ୍କ Pride and Prejudice ଗ୍ରନ୍ଥର
ସଂକ୍ଷିପ୍ତ ଓଡ଼ିଆ ସଂସ୍କରଣ ]

ଅନୁବାଦ :
**ଅଧ୍ୟାପକ ଶ୍ରୀଧର ଦାସ**



# ମିଷ୍ଟର ବେନେଟଙ୍କ ଘରେ ମନ୍ତ୍ରଣା

ଲଙ୍ଗବୋର୍ଣ୍ଣରେ ମି· ବେନେଟ୍‌ଙ୍କ ଘର । ଘରେ ସେ, ତାଙ୍କର ସ୍ତ୍ରୀ ଓ ପାଞ୍ଚଟି ଝିଅ । ସେମାନଙ୍କର ନାମ ଜେନ୍, ଏଲିଜାବେଥ୍, ମେରି, କିଟି ଓ ଲିଡ଼ିଆ । ସମସ୍ତେ ବିବାହଯୋଗ୍ୟା ହେଲେଣି ।

ଦିନେ ମିସେସ୍ ବେନେଟ୍ ସ୍ୱାମୀଙ୍କୁ କହିଲେ, "ଶୁଣିଛ, ସେ ଯେଉଁ ନେଦର୍‌ଫିଲ୍ଡ୍ ପାର୍କ ବୋଲି ବଡ଼ ଘରଟା ଏତେ କାଳରୁ ଖାଲିପଡ଼ିଥିଲା, ସେ ଘରକୁ ଜଣେ ଭଡ଼ା ନେଲେଣି ।"

"ନା, ସେ କଥା ଶୁଣି ନଥିଲି । ଏଇ ତୁମଠାରୁ ଶୁଣୁଛି ।"

"କିଏ ସେ ଘର ଭଡ଼ା ନେଇଛନ୍ତି ଜାଣିବାକୁ ଇଚ୍ଛା ନାହିଁ ?"

"ଅର୍ଥାତ୍ ତୁମେ ମୋତେ ତାଙ୍କ ନାମ କହିବାକୁ ଚାହଁ । ବେଶ୍, କୁହ; ମୋର ଶୁଣିବାରେ ଆପତ୍ତି ନାହିଁ ।"

"ମିସେସ୍ ଲଙ୍ଗ୍ କହୁଥିଲେ, ଇଂଲଣ୍ଡର ଉତ୍ତରାଞ୍ଚଳର ଜଣେ ଖୁବ୍ ଧନୀ ଲୋକ ସେ ଘର ଭଡ଼ା ନେଇଛନ୍ତି । ସୋମବାର ଦିନ ଆସି ସେ ଘର ଦେଖି ଯାଇଛନ୍ତି । ସେ ଯେଉଁ ଗାଡ଼ିରେ ଆସିଥିଲେ ସେଥିରେ କେଉଁଠି ଚାରିଟା ଘୋଡ଼ା ଲାଗିଥିଲେ । ଘର ଦେଖି ସେ ଭାରି ଖୁସି ହୋଇ ଯାଇଛନ୍ତି । ଭଡ଼ା ତୁଟିଯାଇଛି । ଏଇ ହପ୍ତାକ ଭିତରେ ତାଙ୍କର କେତେ ଜଣ ଚାକର ଆସି ସେଠାରେ ରହିବେ । ଘରଦ୍ୱାର, ବଗିଚା ସବୁ ସଫା କରିବେ । ସେ ନିଜେ ସେପ୍ଟେମ୍ବର ମାସରେ ଆସିବେ ।"

"ତାଙ୍କ ନାଆଁଟା ତ କହିଲ ନାହିଁ ?"

"ବିଙ୍ଗ୍‌ଲେ ।"

"ବିବାହିତ ନା ଅବିବାହିତ ?"

"ବିବାହ କରି ନାହାନ୍ତି । ଖୁବ୍ ସମ୍ପତ୍ତି ଅଛି । ବର୍ଷକୁ ଚାରି ପାଞ୍ଚ ହଜାର ପାଉଣ୍ଡ ଆୟ ହୁଏ । ଆମ ଝିଅମାନଙ୍କ ପକ୍ଷରେ ସୌଭାଗ୍ୟର କଥା ।"

"କାହିଁକି ? ଜଣେ ଧନୀ ଲୋକ ଏଠାକୁ ଆସିବେ—ସେଥିରେ ଆମ ଝିଅମାନଙ୍କର ଲାଭ କ୍ଷତି କଅଣ ?"

"ତୁମେ କଅଣ ଏତିକ ବୁଝି ପାରୁନ । ସେ ଆସିଲେ ଆମ ଝିଅମାନଙ୍କ ଭିତରୁ ଗୋଟିକୁ ବିଭା ହେବେ ବୋଲି ମୁଁ ଭାବୁଛି ।"

"ଓଃ ! ଏହାହିଁ ତାଙ୍କର ଏଠାକୁ ଆସିବାର ଉଦ୍ଦେଶ୍ୟ ।"

"ତୁମେ ସେ କଅଣ କହୁଛ ? ମୋ କହିବାର କଥା ହେଉଛି, ସେ ଆମ ଝିଅମାନଙ୍କ ମଧ୍ୟରୁ କାହାରି ପ୍ରେମରେ ପଡ଼ିବା ସମ୍ଭବ । ସେ ଆସିଲା ମାତ୍ରେ ତୁମେ ତାଙ୍କ ଘରକୁ ଯାଇ ଦେଖା କରିବ ।"

"ତାଙ୍କୁ ଦେଖା କରିବାକୁ ଯିବାର କାରଣ ନାହିଁ । ତୁମେ ଝିଅମାନଙ୍କୁ ନେଇ ଯାଇପାର, କିମ୍ବା ତୁମେ ନ ଯାଇ କେବଳ ଝିଅମାନଙ୍କୁ ପଠାଇପାର । ମୋ ମତରେ ମୋ ସଙ୍ଗରେ ତୁମର ନଯିବା ଭଲ ହେବ । ସେଥିର କାରଣ ହେଉଛି, ମୋର ଝିଅମାନେ ଯେପରି ସୁନ୍ଦରୀ, ତୁମେ ମଧ୍ୟ ସେହିପରି ସୁନ୍ଦରୀ । ତୁମେ ଗଲେ ସେ ତୁମ ପ୍ରେମରେ ପଡ଼ି ଯାଇ ପାରନ୍ତି ।"

"ଥାଉ, ମୋ ରୂପର ପ୍ରଶଂସା କରିବା ଦରକାର ନାହିଁ । ଦିନେ ମୋର ରୂପ ଥିଲା । ଏବେ କଅଣ ଆଉ ସେ ରୂପ ଅଛି ? ପାଞ୍ଚ ପାଞ୍ଚଟା ଝିଅ ହେଲା ପରେ ମୁଁ ଆଉରି ଆପଣା ସୁନ୍ଦରପଣ ଦେଖାଇହେବ ?"

"ଯାହାହେଉ, ମୁଁ ମିଃ ବିଙ୍ଗ୍‌ଲେଙ୍କ ପାଖକୁ ଯିବ ବୋଲି ଜବାବ୍ ଦେଇ ପାରିବି ନାହିଁ ।"

"ଝିଅଗୁଡ଼ାଙ୍କ କଥା ଟିକିଏ ଭାବ । ସେ ଯଦି ଜଣକୁ ବିଭା ହୁଅନ୍ତି, କେଡ଼େ ଭାଗ୍ୟର କଥା ହେବ । ସାର୍ ଉଇଲିୟମ୍ ଆଉ ଲେଡି ଲୁକାସ୍‌ଙ୍କୁ ଜାଣିଛ ? ସେମାନେ କୌଣସି ନୂଆ ଲୋକ ସଙ୍ଗେ ଦେଖା କରନ୍ତି ନାହିଁ । କିନ୍ତୁ ମିଃ ବିଙ୍ଗ୍‌ଲେ ଆସୁ ଆସୁ ସେ ଦୁହେଁ ତାଙ୍କ ଘରକୁ ଯାଇ ଦେଖା କଲେଣି । ନାହିଁ,

ତୁମକୁ ନିଶ୍ଚୟ ଯିବାକୁ ହେବ । ନହେଲେ ମୁଁ ଏକୁଟିଆ ଝିଅମାନଙ୍କୁ ନେଇ ଯିବ ନାହିଁ ।"

"ମୁଁ ଯିବ ନାହିଁ; କିନ୍ତୁ ମି: ବିଙ୍ଗ୍‌ଲେ ତୁମକୁ ଦେଖି ସନ୍ତୁଷ୍ଟ ହେବେ ଏଥିରେ ସନ୍ଦେହ ନାହିଁ । ମୁଁ ତୁମ ହାତରେ ଖଣ୍ଡିଏ ଚିଠି ଦେଇପାରେ । ସେଥିରେ ଲେଖିଦେବି, ସେ ମୋର ଯେ କୌଣସି ଝିଅକୁ ବିବାହ କରିବାରେ ମୋର ପୂରା ସମ୍ମତି ଅଛି । ହୁଏତ ତା ଭିତରେ ମୋର ଲିଜିକୁ ଟିକିଏ ପ୍ରଶଂସା କରି ଲେଖିବି ।"

"ତୁମ କଥା ବୁଝି ହେଉନି । ଲିଜି କଅଣ ଅନ୍ୟମାନଙ୍କଠାରୁ ରୂପରେ ଗୁଣରେ ଅଧିକ ? ଜେନ୍‌ ତ ତାଠାରୁ ଦୁଇ ଗୁଣ ସୁନ୍ଦରୀ; ଲିଡ଼ିଆ ତାଠାରୁ ଆହୁରି ଶାନ୍ତ । ତୁମର ଲିଜି ପାଇଁ ଏତେ ପକ୍ଷପାତ କାହିଁକି ?"

"ସବୁ ଝିଅଙ୍କ ଭଳି ଆମ ଝିଅମାନେ ମଧ୍ୟ ନିର୍ବୋଧ । ସେମାନଙ୍କ ଭିତରୁ ଲିଜି କମ୍ ନିର୍ବୋଧ ।"

"ନିଜ ଝିଅଗୁଡ଼ାଙ୍କୁ ଏପରି ନିନ୍ଦା କରି କହୁଛ କିପରି ? ମୋତେ ଚିଡ଼ାଇବାରେ ତୁମର ଆନନ୍ଦ । ଏମିତି ତୁମେ ମୋ ମୁଣ୍ଡ ଖରାପ କରିଦେବ ।"

"ତୁମର ଏପରି ଭାବିବା ଭୁଲ୍ । ତୁମ ମୁଣ୍ଡକୁ ମୁଁ କୋଡ଼ିଏ ବାଇଶି ବର୍ଷ ହେଲା ଚିହ୍ନିଲିଣି । ତୁମ ମୁଣ୍ଡ ଯେମିତି ତୁମେ ରହିଥିବ । ଚାରି ପାଞ୍ଚ ହଜାର ପାଉଣ୍ଡ ଆୟ କରୁଥିବା କେତେ ଯୁବକ ଆସି ଆମ ପାଖରେ ରହିବାର ଦେଖିଥିବ ।"

"ତୁମେ ସେମାନଙ୍କ ପାଖକୁ ଯିବ ନାହିଁ ବୋଲି କହୁଛ । କୋଡ଼ିଏ ଜଣ ଧନୀ ଯୁବକ ଆସିଲେ ସୁଦ୍ଧା ଆମର ଲାଭ କଅଣ ?"

"ଦେଖିବ, କୋଡ଼ିଏ ଜଣ ଆସିଲା ବେଳକୁ ମୁଁ ନିଶ୍ଚୟ ସେମାନଙ୍କୁ ଦେଖା କରିବାକୁ ଯିବି ।"

ମି. ବେନେଟ୍‌ଙ୍କ ଚରିତ୍ରରେ ବୁଦ୍ଧିମତ୍ତା, ବ୍ୟଙ୍ଗ, ପରିହାସ ଓ ସାମାଜିକ କ୍ଷେତ୍ରରେ ଆତ୍ମସଂଗୋପନ ପ୍ରଭୃତି ଗୁଣମାନଙ୍କର ବିଚିତ୍ର ସମାବେଶ ଦେଖାଯାଉଥିଲା । ତେଇଶି ବର୍ଷର ବୈବାହିକ ଜୀବନ ଯାପନ କଲା ପରେ ମଧ୍ୟ ମିସେସ୍ ବେନେଟ୍ ସ୍ୱାମୀଙ୍କର ଚରିତ୍ରକୁ ବୁଝି ପାରି ନଥିଲେ । ମିସେସ୍ ବେନେଟ୍‌ଙ୍କ ବୁଦ୍ଧି

ବୃତ୍ତି ଟିକିଏ ଊଣାଥିଲା; ଜ୍ଞାନ ଥିଲା ତହିଁରୁ ଊଣା । ତାଙ୍କର ମିଜାଜ ସହଜରେ ବିଗିଡ଼ି ଯାଉଥିଲା । ତାଙ୍କ ଜୀବନର ଲକ୍ଷ୍ୟ ଥିଲା, କିପରି ଝିଅମାନଙ୍କୁ ବିବାହ କରାଇଦେବେ । ଆନନ୍ଦ କହିଲେ ସେ ବୁଝୁଥିଲେ ଗଳ୍ପ କରିବା ।

## ମି: ବେନେଟ୍ ଓ ମି: ବିଙ୍ଗଲେ

ମି: ବିଙ୍ଗଲେ ନେଦରଫିଲ୍ଡ଼କୁ ଆସିବା ପରେ ପ୍ରଥମ ଯେଉଁ କେତେ ଜଣ ତାଙ୍କୁ ଦେଖା କରିବାକୁ ଯାଇଥିଲେ, ସେମାନଙ୍କ ଭିତରେ ମି: ବେନେଟ୍ ଅନ୍ୟତମ । କିନ୍ତୁ ସେ ଏକଥା ତାଙ୍କ ସ୍ତ୍ରୀଙ୍କୁ ଜାଣିବାକୁ ଦେଇନଥିଲେ । ସ୍ତ୍ରୀ ଯିବାପାଇଁ ଜିଦ୍ କଲେ ସେ କହୁଥିଲେ, "ନା, ମୁଁ ସେଠାକୁ ଯିବନାହିଁ ।"

ଦିନେ ସନ୍ଧ୍ୟା ସମୟରେ ମି. ବେନେଟ୍ ନେଦରଫିଲ୍ଡରୁ ଆସି ଘରେ ପହଞ୍ଚିଲେ । ସେତେବେଳକୁ ଏଲିଜାବେଥ୍ ନିଜ ଟୋପିରେ ରିବନ୍, ଫୁଲ ପ୍ରଭୃତି ଖଞ୍ଜୁଥିଲେ । ତାହା ଦେଖି ମି: ବେନେଟ ହଠାତ୍ କହିପକାଇଲେ, "ମି: ବିଙ୍ଗଲେ ଟୋପିର ଏ ପ୍ରକାର ସାଜସଜ୍ଜାକୁ ଆଦର କରିବେ ।"

ମିସେସ୍ ବେନେଟ୍ କହିଲେ, "ମି: ବିଙ୍ଗଲେ କେଉଁ ଜିନିଷକୁ ଆଦର କରନ୍ତି, ଆମେ କିପରି ଜାଣିବା ? ମୁଁ ତୁମକୁ ଏତେ କରି କହୁଛି, 'ଥରେ ଯାଅ ।' ତୁମେ ତ ଗଲ ନାହିଁ ।" ମିସେସ୍ ବେନେଟ୍‌ଙ୍କ କଣ୍ଠସ୍ୱର ବିରକ୍ତିପୂର୍ଣ୍ଣ ।

ଏଲିଜାବେଥ୍ କହିଲେ, "ମାଆ, ଆମର ଯିବା ଦରକାର କଅଣ ? ସାଧାରଣ ବଲ୍ ନୃତ୍ୟକୁ ସେ ନିଶ୍ଚୟ ଆସିବେ । ସେଇଠାରେ ତାଙ୍କୁ ଦେଖି ପାରିବା । ମିସେସ୍ ଲଙ୍ଗ୍ ତାଙ୍କୁ ଆମ ସହିତ ପରିଚିତ କରାଇ ଦେବେ ବୋଲି କହିଛନ୍ତି ।"

କିଟି ପଚାରିଲା, "ମେରିଟନରେ ଆସନ୍ତା ନୃତ୍ୟ କେବେ ହେଉଛି ?"

ଏଲିଜାବେଥ୍—ଏଇ ପନ୍ଦର ଦିନ ଭିତରେ ।

ମିସେସ୍ ବେନେଟ—ବେଶ୍, ନୃତ୍ୟର ପୂର୍ବଦିନ ପର୍ଯ୍ୟନ୍ତ ମିସେସ୍ ଲଙ୍ଗ୍ ଏଠାରେ ରହିବେ ନାହିଁ । ସେତେବେଳକୁ ସେ ନିଜେ ମି: ବିଙ୍ଗଲେଙ୍କୁ ଚିହ୍ନି ନଥିବେ; ଆଉ ତାଙ୍କୁ ଆମ ସାଥିରେ ପରିଚିତ କରାଇଦେବେ କିପରି ?

ମି. ବେନେଟ୍—ତାହାହେଲେ ତୁମେ ମିଃ ବିଙ୍ଗଲେଙ୍କୁ ଆମ ଲିଜି ସହିତ ପରିଚିତ କରାଇଦେବ ।

"କେବେ ନୁହେ । ଏକବାରେ ଅସମ୍ଭବ ! ମୁଁ ନିଜେ ମିଃ ବିଙ୍ଗଲେଙ୍କୁ ଦେଖିନାହିଁ କି ଚିହ୍ନି ନାହିଁ । ଆଚ୍ଛା, ମୋତେ ଏମିତି ବିରକ୍ତ କଲେ ତୁମକୁ କି ସୁଖ ମିଳେ ? ବିଙ୍ଗଲେ ବିଙ୍ଗଲେ ଶୁଣି ଶୁଣି ମୋତେ ବିରକ୍ତ ଲାଗିଲାଣି । ଆଉ ସେ ନାଆଁ ଧରନି ।"

"ତୁମେ ବିଙ୍ଗଲେଙ୍କ ଉପରେ ବିରକ୍ତ ବୋଲି ଆଗରୁ ମୋତେ କହିଦେବା ଉଚିତ ଥିଲା । ତାହା ହୋଇଥିଲେ ମୁଁ କଷ୍ଟ ସ୍ୱୀକାର କରି ତାଙ୍କ ଘରକୁ ଯାଇ ନ ଥାନ୍ତି । ଯାହାହେଉ, ଆଜି ମୁଁ ତାଙ୍କ ପାଖକୁ ଯାଇଥିଲି । ଏଣିକି ତାଙ୍କୁ ଭଲରୂପେ ଜାଣିପାରିବା ।"

ଏହା ଶୁଣି କେବଳ ମାଆ କାହିଁକି ଝିଅମାନେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଗଲେ । ସବୁଠାରୁ ବେଶି ଆଶ୍ଚର୍ଯ୍ୟ ହେଲେ ମିସେସ୍ ବେନେଟ୍ । କହିଲେ, "ମୁଁ ଜାଣେ, ତୁମେ ଖୁବ ଭଲ ମଣିଷ । ତୁମେ କଣ ଯାଇଥାନ୍ତ କିପରି ? ଝିଅଗୁଡ଼ିଙ୍କଠି ତୁମର ଖୁବ୍ ସ୍ନେହ । ସେମାନଙ୍କର ମଙ୍ଗଳ ତୁମର ଚିନ୍ତା । ଏତେ ବଡ଼ ସୁଯୋଗ କିଏ ଛାଡ଼େ ? କିନ୍ତୁ ମୋର ତୁମକୁ ପ୍ରବଞ୍ଚାଇବା ମଧ୍ୟ କର୍ତ୍ତବ୍ୟ ଥିଲା ।" ତାହା ପରେ ସେ ଝିଅମାନଙ୍କୁ କହିଲେ, "ଦେଖିଲ, ବାପା ତୁମମାନଙ୍କୁ କେତେ ଭଲପାଆନ୍ତି ! ଆମ ବଳ ବୟସ ଗଲାଣି । ଏବେ ଆମେ କାହାରି ଘରକୁ ଯାଇ ଚିହ୍ନା ପରିଚୟ ହେବା ଠିକ୍ ନୁହେ । କିନ୍ତୁ ତୁମମାନଙ୍କ ଭବିଷ୍ୟତ ଦୃଷ୍ଟିରୁ ସେ କୌଣସି ସ୍ଥାନକୁ ଆମେ ଯିବା ପାଇଁ ପ୍ରସ୍ତୁତ । ତୁମେମାନେ ବାପାଙ୍କ ପାଖରେ ବିଶେଷ ଋଣୀ । ଲିଡ଼ିଆ, ଏଥର ବଲ୍ ନୃତ୍ୟରେ ମିଃ ବିଙ୍ଗଲେ ତୋତେ ତାଙ୍କର ନୃତ୍ୟସାଥି କରିବେ ବୋଲି ମୋର ପୂର୍ଣ୍ଣ ବିଶ୍ୱାସ ।"

ଲିଡ଼ିଆ ଆତ୍ମପ୍ରସାଦ ଅନୁଭବ କରି କହିଲା, "ହଁ ମା, ମୋର ମଧ୍ୟ ସେହି ବିଶ୍ୱାସ । ବୟସରେ ଯଦିଓ ମୁଁ ସମସ୍ତଙ୍କଠାରୁ ସାନ, କିନ୍ତୁ ଦେଖନ୍ତୁ, ମୁଁ ଉଚ୍ଚତାରେ ସମସ୍ତଙ୍କଠାରୁ ବଡ଼ ।"

ମିସେସ୍ ବେନେଟ୍ ଓ ଝିଅମାନେ ମିଃ ବିଙ୍ଗଲେଙ୍କ ବିଷୟରେ ଅନେକ ପ୍ରଶ୍ନ ମିଃ ବେନେଟ୍‌ଙ୍କୁ ପଚାରିଲେ । କିନ୍ତୁ ଯେତେ ଚେଷ୍ଟା କଲେହେଁ ତାଙ୍କଠାରୁ କିଛି ସୂଚନା ସୁଦ୍ଧା ମିଳିଲା ନାହିଁ ।

ସେମାନେ ହତାଶ ହୋଇ କୌତୂହଳ ଚରିତାର୍ଥ କରିବାପାଇଁ ଲେଡ଼ି ଲିଉକାସଙ୍କର ଦ୍ୱାରସ୍ଥ ହେଲେ । ଯାହାହେଉ ତାଙ୍କଠାରୁ ମିଃ ବିଙ୍ଗଲେଙ୍କ ବିଷୟରେ କେତେକ ତଥ୍ୟ ମିଳିଲା ।

ସାର୍ ଉଇଲିୟମ୍ ମିଃ ବିଙ୍ଗଲେଙ୍କ ଘରକୁ ଯାଇଥିଲେ । ମିଃ ବିଙ୍ଗଲେ ଜଣେ ସ୍ୱାସ୍ଥ୍ୟବାନ୍ ଯୁବକ; ରୂପ ସୁନ୍ଦର; ଆଚରଣ ଦ୍ୱାରା ଅନ୍ୟକୁ କିଣି ନେଇ ପାରନ୍ତି । ଆଗାମୀ ବଲ୍‌ନୃତ୍ୟରେ ସେ ଯୋଗଦେବେ । ଖାଲି ସେତିକି ନୁହେଁ, ତାଙ୍କର ଅନେକ ବନ୍ଧୁ ତାଙ୍କ ସଙ୍ଗରେ ଆସିବେ ।

ଶେଷ ସମ୍ବାଦରେ ଝିଅମାନଙ୍କର ମନ ଉଲ୍ଲସିତ ହୋଇଉଠିଲା । ବଲ୍ ନୃତ୍ୟ ହେଉଛି, ବିବାହ ପଥର ପ୍ରଥମ ସୋପାନ । ବିଙ୍ଗଲେଙ୍କ ହୃଦୟ ଜୟ କରିବା ନିମନ୍ତେ ପ୍ରତ୍ୟେକଙ୍କ ମନରେ ଆଶା ଜାଗିଉଠିଲା ।

ମିସେସ୍ ବେନେଟ୍ କହିଲେ, "ଯେବେ ଗୋଟିଏ ଝିଅ ବିବାହୋଇ ନେଦରଫିଲ୍‌ଡରେ ରହେ ଓ ଅନ୍ୟମାନେ ଉପଯୁକ୍ତ ପାତ୍ର ପାଆନ୍ତି, ତେବେ ମୋର ଜୀବନରେ ଆଉ କିଛି ଲୋଡ଼ା ନାହିଁ ।"

କିଛି ଦିନ ପରେ ମିଃ ବିଙ୍ଗଲେ ଆସି ମିଃ ବେନେଟ୍‌ଙ୍କୁ ଦେଖାକଲେ । ଦୁହେଁ ପଢା ଘରେ ବସି ଦଶ ପନ୍ଦର ମିନିଟ ଯାଏ କଥାବାର୍ତ୍ତା ହେଲେ । ମିଃ ବିଙ୍ଗଲେ ଝିଅମାନଙ୍କ ରୂପ ବିଷୟ ଶୁଣି ସେମାନଙ୍କୁ ଦେଖିବାକୁ ଇଚ୍ଛା କରି ଆସିଥିଲେ । କିନ୍ତୁ ତାଙ୍କର ସେ ଇଚ୍ଛା ଆଦୌ ପୂରଣ ହେଲା ନାହିଁ । ସେମାନଙ୍କ ବାପାଙ୍କୁ ଦେଖି ତାଙ୍କୁ ସନ୍ତୁଷ୍ଟ ହେବାକୁ ପଡିଲା । ଏଣେ ମିଃ ବେନେଟଙ୍କ ଝିଅମାନେ ମିଃ ବିଙ୍ଗଲେଙ୍କୁ ଦେଖିବା ପାଇଁ କମ୍ ଅଧୀର ନଥିଲେ । ସେମାନେ ଝରକାବାଟେ କେବଳ ତାଙ୍କର ନୀଳ ରଙ୍ଗର କୋଟ୍ ଓ କଳା ଘୋଡା ଛଡା ଆଉ କିଛି ଦେଖି ପାରିଲେ ନାହିଁ । ଏତିକିରୁ ସେମାନେ ମିଃ ବିଙ୍ଗଲେଙ୍କ ବିଷୟରେ ନିଜନିଜର ଯାହା କିଛି ଧାରଣାକଲେ ।

# ମେରିଟନରେ ବଲ୍ ନୃତ୍ୟ

ଦିନେ ମିଃ ବେନେଟ ଭୋଜନ ନିମନ୍ତେ ମିଃ ବିଙ୍ଗଲେଙ୍କୁ ନିମନ୍ତ୍ରଣ କରିଥିଲେ; କିନ୍ତୁ ସେ ଲଣ୍ଡନ ଯାଉଥିବାରୁ ନିମନ୍ତ୍ରଣ ରକ୍ଷା କରି ପାରିଲେ ନାହିଁ । ଆସନ୍ତା ବଲ୍ ନୃତ୍ୟ ଉପଲକ୍ଷେ ଲଣ୍ଡନର କେତେ ଜଣ ବନ୍ଧୁଙ୍କୁ ଆଣିବା ତାଙ୍କର ଉଦ୍ଦେଶ୍ୟ ଥିଲା । ପ୍ରଥମେ ଶୁଣାଗଲା ଯେ ତାଙ୍କ ସଙ୍ଗରେ ବାର ଜଣ ମହିଳା ଓ ସାତଜଣ ଭଦ୍ରବ୍ୟକ୍ତି ଆସୁଛନ୍ତି । ନୃତ୍ୟର ପୂର୍ବଦିନ ଶୁଣାଗଲା, ଛଅଜଣ ମହିଳା ଆସିଛନ୍ତି । କିନ୍ତୁ ନୃତ୍ୟଶାଳାରେ ସେ ପହଞ୍ଚିବାରୁ ଦେଖାଗଲା, ତାଙ୍କ ସହିତ ମାତ୍ର ଦୁଇଜଣ ପୁରୁଷ ଓ ଦୁଇଜଣ ମହିଳା ଆସିଛନ୍ତି । ମହିଳା ଦୁଇଜଣ ହେଉଛନ୍ତି ମିଃ ବିଙ୍ଗଲେଙ୍କର ଭଉଣୀ । ପୁରୁଷ ଦୁଇଜଣଙ୍କ ମଧ୍ୟରୁ ଜଣେ ହେଉଛନ୍ତି ତାଙ୍କର ଭିଣୋଇ ମି. ହର୍ଷ୍ଟ ଓ ଅନ୍ୟ ଜଣକର ନାମ ମିଃ ଡାର୍ସି । ମିଃ ହର୍ଷ୍ଟ ହେଉଛନ୍ତି ବିଙ୍ଗ୍ଲେଙ୍କ ବଡ ଭଉଣୀଙ୍କର ସ୍ୱାମୀ । ସାନ ଭଉଣୀ ଅବିବାହିତା ।

ମିଃ ବିଙ୍ଗଲେ ଦେଖିବାକୁ ସୁପୁରୁଷ; ତାଙ୍କର ଆଚରଣ ମଧ୍ୟ ଖୁବ୍ ଭଦ୍ରୋଚିତ । ସେ ସମସ୍ତଙ୍କ ସହିତ ବନ୍ଧୁତୁଲ୍ୟ ବ୍ୟବହାର ଦେଖାଉଥିଲେ । ତାଙ୍କର ଭଉଣୀ ଦୁହେଁ ସୁନ୍ଦରୀ ଓ ଆଧୁନିକ ରୁଚିରେ ସଜ୍ଜିତା । ମିଃ ହର୍ଷ୍ଟଙ୍କର ବ୍ୟବହାର ମଧ୍ୟ ସମସ୍ତଙ୍କ ମନରେ ସନ୍ତୋଷ ଜନ୍ମାଇଥିଲା । କିନ୍ତୁ ମିଃ ଡାରସି ସଭିଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର ଶରୀର ଉନ୍ନତ, ମୁଖମଣ୍ଡଳ ସୁଗଠିତ ! ଏହା ସଙ୍ଗେ ପ୍ରଚାରିତ ହୋଇଗଲା ଯେ ସେ ବିପୁଳ ଧନର ଅଧିକାରୀ । ତାଙ୍କର ବାର୍ଷିକ ଆୟ ଦଶ ହଜାର ପାଉଣ୍ଡରୁ ଅଧିକ । ଅଳ୍ପ ସମୟ ମଧ୍ୟରେ ନୃତ୍ୟଶାଳାର ସମସ୍ତେ ତାଙ୍କ ପ୍ରଶଂସାରେ ମୁଖର ହୋଇ ଉଠିଲେ । କିନ୍ତୁ ଏହି ପ୍ରଶଂସା ବେଶି ବେଳ ରହିଲା ନାହିଁ । କିଏ କହିଲା 'ଲୋକଟା ଏଡ଼େ ଗର୍ବୀ ! କାହା ସଙ୍ଗେ ମିଶିପାରୁନାହିଁ ।' କିଏ କହିଲା, 'ଦେଖ, ମୁହଁଟା କିପରି ବିକୃତ କରୁଛି । ତାକୁ କଅଣ କିଛି ଭଲଲାଗୁନାହିଁ ?' ଆଉ କେହି କହିଲା, 'ଏହାର ଡର୍ବିଶାୟାରରେ କେଉଁଠି ଗୋଟାଏ ବଡ ଜମିଦାରୀ ଅଛି । ଧନ ଥିଲେ କଅଣ ଲୋକେ ଏଇପରି ହୁଅନ୍ତି ?" ମୋଟଉପରେ ମିଃ

ଡାର୍‌ସି ଉଦ୍ଧତ ପ୍ରକୃତିର ଲୋକ; ଏପରିକ ରୂପରେ ସୁଦ୍ଧା ସେ ମିଃ ବିଙ୍ଗଲେଙ୍କ ସମକକ୍ଷ ନୁହନ୍ତି ।

ମିଃ ବିଙ୍ଗଲେ ନୃତ୍ୟଶାଳାର ପ୍ରତ୍ୟେକ ଲୋକ ସହିତ ହସି ହସି ବନ୍ଧୁଭଳି କଥାବାର୍ତ୍ତା କରୁଥିଲେ । ପ୍ରତିଯାକ ସେ ନୃତ୍ୟ କଲେ ଓ କଥା ପ୍ରସଙ୍ଗରେ ସେ ନିଜେ ନେଦରଫିଲ୍‌ଡ଼ରେ ଗୋଟିଏ ବଲନୃତ୍ୟର ଆୟୋଜନ କରିବେ ବୋଲି କହିଲେ । ମିଃ ଡାର୍‌ସିଙ୍କର ବ୍ୟବହାର ଏହାଙ୍କର ଠିକ୍ ବିପରୀତ । ଥରେ କିଛି ସମୟ ପାଇଁ ସେ ମିଃ ବିଙ୍ଗଲେଙ୍କ ବଡ଼ ଭଉଣୀ ମିସେସ୍ ହର୍ଷ୍ଟଙ୍କ ସହିତ ଓ ଆଉ ଥରେ ତାଙ୍କ ସାନ ଭଉଣୀ ମିସ୍ ବିଙ୍ଗଲେଙ୍କ ସହିତ ନୃତ୍ୟ କଲେ । ଅନ୍ୟ କୌଣସି ମହିଳାଙ୍କ ସହିତ ପରିଚିତ ହେବାକୁ ସେ ମନା କରିଦେଲେ । ସେ କେବଳ ନୀରବରେ ନୃତ୍ୟଶାଳାରେ ଏପାଖ ସେପାଖ ହେଉଥିଲେ । ସମସ୍ତେ ଏକମତ ହେଲେ ଯେ ମିଃ ଡ଼ାର୍‌ସିଙ୍କ ପରି ଗର୍ବୀ ଓ ଅପ୍ରିୟ ଲୋକ ଜଗତରେ ନାହାନ୍ତି । ମିସେସ୍ ବେନେଟ୍ ତାଙ୍କର ଖୁବ୍ ନିନ୍ଦାକଲେ । ଏଥିର କାରଣ ମଧ୍ୟ ଥିଲା । ତାଙ୍କର ଗୋଟିଏ ଝିଅ ପ୍ରତି ସେ ଅତି ରୂକ୍ଷ ବ୍ୟବହାର କରିଥିଲେ ।

ନୃତ୍ୟଶାଳାରେ ପୁରୁଷଙ୍କ ସଂଖ୍ୟା ମହିଳାଙ୍କଠାରୁ ଊଣା ଥିଲା । ଦୁଇ ଥର ନୃତ୍ୟ ହୋଇଗଲା । କିନ୍ତୁ କେହି ଏଲିଜାବେଥଙ୍କୁ ନିଜର ନୃତ୍ୟ ସଙ୍ଗିନୀ-ରୂପେ ଗ୍ରହଣ କଲେ ନାହିଁ । ମିଃ ବିଙ୍ଗଲେ ନୃତ୍ୟ ବନ୍ଦକରି ଏଥିରେ ଯୋଗ ଦେବା ପାଇଁ ମିଃ ଡାରସିଙ୍କୁ କହିଲେ, "ମିଃ ଡ଼ାର୍‌ସି, ତୁମକୁ ନାଚିବାକୁ ହେବ । ଅଲଗା ହୋଇ ରହିଲେ ଚଳିବ ନାହିଁ ।"

"ନା, ମୁଁ ମୋର ସଙ୍ଗିନୀଙ୍କୁ ଭଲରୂପେ ନ ଜାଣିଲେ ତାଙ୍କ ସହିତ ନୃତ୍ୟ କରିପାରିବି ନାହିଁ । ତୁମର ଭଉଣୀ ଦୁହିଁଙ୍କ ସଙ୍ଗେ ମୁଁ ନାଚିଲି । ଏଠାରେ ଅନ୍ୟ କୌଣସି ମହିଳା ଦେଖିପାରୁ ନାହିଁ, ଯାହାଙ୍କ ସହିତ ମୁଁ ନୃତ୍ୟ କରିପାରିବ ।"

"ମୁଁ ଏଠାରେ ଅନେକ ସୁନ୍ଦରୀ ଓ ଗୁଣବତୀ ମହିଳା ଦେଖିପାରୁଛି ।"

"ମୋ ମତରେ ଏଠାରେ ଜଣେ ମାତ୍ର ସୁନ୍ଦରୀ ମହିଳା ଅଛନ୍ତି ମିସ୍ ଜେନ୍ ବେନେଟ୍ । ତୁମେତ ତାଙ୍କ ସହିତ ନାଚୁଛ ।"

"ହଁ, ସେ ମୋ ମତରେ ସବୁଠାରୁ ସୁନ୍ଦରୀ । କିନ୍ତୁ ତୁମ ପଛରେ ତାଙ୍କର ସେଉଁ ଭଉଣୀ ବସିଛନ୍ତି, ସେ କମ୍ ସୁନ୍ଦରୀ ନୁହନ୍ତି । ତାଙ୍କ ସହିତ ମୁଁ ତୁମର ପରିଚୟ କରାଇଦେବି ।"

ଏହା ଶୁଣିଲକ୍ଷଣି ମିଃ ଡ଼ାର୍ସି ବୁଲିପଡ଼ି ପଛକୁ ଚାହିଁଲେ । ମୁହୂର୍ତ୍ତିକ ପରେ ସେ ମୁହଁ ବୁଲାଇ ଆଣି କହିଲେ, "ମି. ବିଙ୍ଗଲେ, ସେ ସୁନ୍ଦରୀ ହୋଇ ପାରନ୍ତି; କିନ୍ତୁ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହେଉନାହିଁ । ଆଉ ଗୋଟିଏ କଥା— ସେଉଁ ମହିଳାମାନଙ୍କୁ ଅନ୍ୟ ପୁରୁଷମାନେ ଗ୍ରହଣ କରୁ ନାହାନ୍ତି, ସେମାନଙ୍କ ବିଷୟରେ ମୁଁ ଆଗ୍ରହୀ ନୁହେଁ । ତୁମେ ଯାଅ, ମିସ୍ ଜେନ୍ ବେନେଟ୍ଙ୍କ ସାଥିରେ ନୃତ୍ୟ କର ଆନନ୍ଦ ଉପଭୋଗ କରିବ । ମୋ ପାଇଁ ତୁମର ସମୟ ନଷ୍ଟ କରୁଛ କାହିଁକି ?"

ମି. ବିଙ୍ଗଲେ ଓ ମି. ଡାର୍ସି ଚାଲିଗଲେ । ଏଲିଜାବେଥ୍ ସେ ଦୁହିଁଙ୍କର କଥାବାର୍ତ୍ତା ଶୁଣି ମି. ଡାରସିଙ୍କ ପ୍ରତି ଭୟଙ୍କର ବିରକ୍ତି ପ୍ରକାଶ କଲେ ।

ମିସେସ୍ ବେନେଟ୍ଙ୍କ ମନରେ ଭାରି ଆନନ୍ଦ । ତାଙ୍କ ବଡ ଝିଅ ଜେନ୍ ସହିତ ମି. ବିଙ୍ଗଲେ ଦୁଇ ଥର ନାଚିଲେ । ମିସ୍ ବିଙ୍ଗଲେ ଓ ମିସେସ୍ ହର୍ଷ୍ଟ ଜେନ୍‌କୁ ଖୁବ୍ ଆଦର ଦେଖାଇଲେ । ଜେନ୍ ମଧ୍ୟ ତାର ମାଆ ପରି ମନେ ମନେ ଆନନ୍ଦିତ ହେଲା । ଏଲିଜାବେଥ ଜେନ୍‌ର ସୌଭାଗ୍ୟରେ ଆନନ୍ଦ ପ୍ରକାଶ କଲେ । କିଟି ଓ ଲିଡ଼ିଆ ମଧ୍ୟ ଜଣେ ଜଣେ ସଙ୍ଗୀ ପାଇ ନୃତ୍ୟ କରିଥିଲେ । ସେଥିକିରେ ସେ ଦୁହେଁ ସନ୍ତୁଷ୍ଟ । ପାଖ ପଡ଼ୋଶୀମାନେ ମେରୀର ପ୍ରଶଂସା କରୁଥିଲେ । ମୋଟଉପରେ ମିସେସ୍ ବେନେଟ୍ ଓ ତାଙ୍କର ଝିଅମାନେ ଅତି ଆନନ୍ଦରେ ଘରକୁ ଫେରିଲେ ।

ମି. ବେନେଟ୍ ନୃତ୍ୟଶାଳାକୁ ଯାଇ ନ ଥିଲେ । ସେ ଘରେ ବସି ଖଣ୍ଡେ ବହି ପଢ଼ୁଥିଲେ । ଘରେ ପହଞ୍ଚିଲାମାତ୍ରେ ତାଙ୍କର ସ୍ତ୍ରୀ କହିଲେ, "ଆଜି ସନ୍ଧ୍ୟାଟି ଖୁବ୍ ମଜାରେ କଟିଲା । କି ସୁନ୍ଦର ବଲ୍ ନୃତ୍ୟ ହେଲା ! ତୁମେ ଯାଇଥିଲେ ଭଲ ହୋଇଥାନ୍ତା । ସମସ୍ତେ ଜେନ୍‌ର ପ୍ରଶଂସା କଲେ ! ମିଃ ବିଙ୍ଗଲେଙ୍କ ମତରେ ସେ ସବୁଠାରୁ ସୁନ୍ଦରୀ । ସେ ତା ସଙ୍ଗରେ ଦୁଇଥର ନୃତ୍ୟ କଲେ । ଶୁଣିଲ, ଦୁଇଥର । ଆଉ କେହି ଦୁଇ ଥର ନାଚି ନାହାନ୍ତି । ସେ ତ ପ୍ରଥମେ

ମିସ୍ ଲିଉକାସଙ୍କ ସହିତ ନାଚିଲେ । ମୋ ମନ ଖରାପ ହୋଇଗଲା । କିନ୍ତୁ ଅଳ୍ପ ସମୟ ପରେ ସେ ଜେନ୍ ସହିତ ପରିଚିତ ହେବାକୁ ଇଚ୍ଛା ପ୍ରକାଶ କଲେ । ଦ୍ୱିତୀୟ ଥର ଆମ ଜେନ୍ ତାଙ୍କ ସହିତ ନୃତ୍ୟ କଲା । ସେ ତୃତୀୟ ଥର ମିସ୍ କିଙ୍ଗଙ୍କ ସହିତ ଓ ଚତୁର୍ଥ ଥର ମିସ୍ ମେରିଆ ଲିଉକାସଙ୍କ ସହିତ ନୃତ୍ୟ କଲେ । କିନ୍ତୁ ପଞ୍ଚମ ଥର ବେଳକୁ ସେ ପୁଣି ଥରେ ଜେନ୍ ସହିତ ନାଚିଲେ । ଷଷ୍ଠ ଥର ବେଳକୁ ସେ ଆମ ଲିଜିକୁ ନିଜର ସଙ୍ଗିନୀ ରୂପେ ବାଛିଲେ ।''

ମିସେସ୍ ବେନେଟ୍ ଆହୁରି କହିବାକୁ ବସିଥିଲେ, କିନ୍ତୁ ମିଃ ବେନେଟ୍ ତାଙ୍କୁ ଆଉ ଆଗେଇବାକୁ ନଦେଇ କହିଲେ, ''ଷଷ୍ଠ ଥର, ସପ୍ତମ ଥର କିଏ ତାଙ୍କର ସଙ୍ଗିନୀ ହୋଇଥିଲା, ସେ ସବୁ ଶୁଣିବା ଦରକାର ନାହିଁ । ତାଙ୍କର ଏତେ ଥର ନାଚିବାର କି ଦରକାର ଥିଲା, ମୁଁ ଜାଣିପାରୁ ନାହିଁ । ପ୍ରଥମ ନାଚ ବେଳେ ତାଙ୍କର ଗୋଡ଼ ଭାଙ୍ଗିଯାଇଥିଲେ ବରଂ ମୁଁ ଖୁସି ହୋଇଥାନ୍ତି ।''

''ଓଃ, ତୁମେ କଅଣ କହୁଛ ! ମି. ବିଙ୍ଗଲେ ଅତି ସୁନ୍ଦର ଲୋକ । ତାଙ୍କ ଭଉଣୀ ଦୁହେଁ ମଧ୍ୟ ଖୁବ୍ ଆଡ଼ମ୍ବରପ୍ରିୟ । ସେ ଦୁହିଁଙ୍କ ପୋଷାକ ଖୁବ ମୂଲ୍ୟବାନ୍ ହୋଇଥିବ । ମିସେସ୍ ହର୍ଷ୍ଟଙ୍କ ପୋଷାକରେ ଯେଉଁ ଲେସ୍ ...''

''ହଉ, ସେତିକି ହେଇଥାଉ । ସେମାନଙ୍କ ପୋଷାକର ଆଡ଼ମ୍ବର ବର୍ଣ୍ଣନା କରିବା ଦରକାର ନାହିଁ ।''

ମିସେସ୍ ବେନେଟ୍ ଦେଖିଲେ, ସ୍ୱାମୀ ମି. ବିଙ୍ଗଲେ ଓ ତାଙ୍କ ଭଉଣୀଙ୍କ ପ୍ରଶଂସା ଶୁଣିବାକୁ ଅନିଚ୍ଛୁକ । ତେଣୁ ସେ ମିଃ ଡାର୍ସିଙ୍କର ନିନ୍ଦା କରିବାକୁ ଲାଗିଲେ । ଶେଷରେ କହିଲେ, ''ସେ ଆମ ଏଲିଜାବେଥକୁ ପସନ୍ଦ ନ କଲେ କ୍ଷତି ନାହିଁ । ଲୋକଟା ନିତାନ୍ତ ଅହଙ୍କାରୀ । ଖାଲି ମୁଁ ନୁହେଁ; କେହି ତା ଗର୍ବକୁ ସହି ପାରିଲେ ନାହିଁ । ନିଜକୁ ଅତି ବଡ଼ ମନେକରି ସେ ଖାଲି ଘରଯାକ ଏପାଖ ସେପାଖ ହେଉଥିଲା । ତା ଆଖିରେ ଆମ ଏଲିଜାବେଥ୍ କେଉଁଠି ସୁନ୍ଦରୀ ନୁହେଁ । ତୁମେ ଯାଇଥିଲେ ତାକୁ ଦପଦପ ଶୁଣାଇ ଦେଇଥାନ୍ତ । ଲୋକଟା ମୋଟେ ଭଲ ନୁହେ ।''

# ମି. ବିଙ୍ଗଲେ ଓ ମି. ଡାରସି

ମିଃ ବେନେଟ୍‌ଙ୍କ ଘରେ ଜେନ୍ ଓ ଏଲିଜାବେଥ ଏ ଦୁହିଁଙ୍କ ଭିତରେ କଥାବାର୍ତ୍ତା ଚାଲିଥିଲା । ଜେନ୍ କହିଲେ, "ମି. ବିଙ୍ଗ୍‌ଲେ ଜଣେ ପୂରା ଭଦ୍ରଲୋକ । ଯୁବକ ତାଙ୍କର ପରି ହେବା ଉଚିତ । ତାଙ୍କର ବୁଦ୍ଧି ଯେପରି, ବ୍ୟବହାର ମଧ୍ୟ ସେହିପରି ।"

ଏଲିଜାବେଥ କହିଲେ, "ତାଙ୍କର ରୂପଟି ମଧ୍ୟ ସୁନ୍ଦର । କହିବାକୁ ଗଲେ, ସେ ଜଣେ ଆଦର୍ଶ ଯୁବକ ।"

"ମୋର ଆନନ୍ଦର ବିଶେଷ କାରଣ ଅଛି । ମୋ ସହିତ ସେ ଦୁଇଥର ନାଚିଲେ । ମୁଁ ଏତେ ଦୂର ଆଶା କରି ନ ଥିଲି ।"

"ତୁମେ ଆଶା କରି ନ ଥିଲ ସିନା, ମୁଁ କରିଥିଲି । କେହି ତୁମକୁ ବିଶେଷ ଅନୁଗ୍ରହ ଦେଖାଇଲେ, ତୁମେ ଆଶ୍ଚର୍ଯ୍ୟ ହୋଇଯାଅ, କିନ୍ତୁ ମୁଁ ହୁଏ ନାହିଁ । ସେ ତୁମକୁ ନାଚିବା ପାଇଁ ଦ୍ୱିତୀୟ ଥର ଡାକିଲେ—ଏଥିରେ ଆଶ୍ଚର୍ଯ୍ୟ କଅଣ ରହିଲା ? ସେଠାରେ ଅନ୍ୟ କେହି ତୁମଠାରୁ ଅଧିକ ସୁନ୍ଦରୀ ନଥିଲେ । ମୁଁ ସ୍ୱୀକାର କରୁଛି, ସେ ଖୁବ୍ ଭଲ ଲୋକ । ତେଣୁ ତାଙ୍କୁ ତୁମର ଭଲପାଇବାରେ ମୋର ଆପତ୍ତି ନାହିଁ । କିନ୍ତୁ ତାଙ୍କଠାରୁ ନିର୍ବୋଧ ଲୋକକୁ ମଧ୍ୟ ତୁମେ ଭଲପାଇଛ ।"

"ଲିଜି, ତୁମେ କଅଣ କହୁଛ ?"

"ଯାହା କହୁଛି ସତ କହୁଛି । ତୁମେ ଅନେକ ଲୋକଙ୍କୁ ଭଲପାଅ । କାହାଠାରେ ତୁମେ ଦୋଷ ଦେଖି ପାର ନାହିଁ । ତୁମ ଆଖିରେ ସମସ୍ତେ ଭଲ । ତୁମେ କାହାରି ନିନ୍ଦା କରିବାର ମୁଁ କେବେ ଶୁଣିନାହିଁ ।"

"କାହାରି ସମାଲୋଚନା କରିବା ମୋର ପ୍ରକୃତି ନୁହେଁ । କିନ୍ତୁ ମୋ ମନ କଥା ମୁଁ ଲୁଚାଇ ରଖେ ନାହିଁ । ମୋ ପେଟରେ ଯାହା, ତୁଣ୍ଡରେ ସେଇଆ ।"

"ସେ କଥା ମୁଁ ଜାଣେ । ତାହାହିଁ ମୋତେ ଆଶ୍ଚର୍ଯ୍ୟ ଲାଗେ । ତୁମର ଖୁବ୍ ବୁଦ୍ଧି ଅଛି । ଥିଲେ କଅଣ ହେବ—ତୁମେ ଅନ୍ୟ ଲୋକଙ୍କର ଦୋଷ

ଦେଖିପାରନା । ସେମାନଙ୍କ ଚରିତ୍ରର ଭଲ ଗୁଣକୁ ତୁମେ ବେଶି କରି ଦେଖ, ମନ୍ଦ ଗୁଣର ନାମଗନ୍ଧ ଧରନା । ଆଚ୍ଛା, ମିː ବିଙ୍ଗଲେଙ୍କ ଭଉଣୀ ଦୁହେଁ ତୁମକୁ କିପରି ଲାଗିଲେ ?''

ସେମାନଙ୍କ ବ୍ୟବହାର ଭଲ ନୁହେଁ; କିନ୍ତୁ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ଭଲଲାଗିଲା । ମିସ୍ ବିଙ୍ଗଲେ ତାଙ୍କ ଭାଇଙ୍କ ପାଖରେ ରହି ତାଙ୍କର ତତ୍ତ୍ୱ ନେବେ । ଆମେ ଜଣେ ଭଲ ପଡ଼ୋଶୀ ପାଇବା ''

ଏଲିଜାବେଥ ଜେନଙ୍କ କଥା ଶୁଣିଲେ; ମାତ୍ର ମିସ୍ ବିଙ୍ଗଲେ ଯେ ପଡ଼ୋଶୀ ଭାବରେ ଭଲ ହେବେ, ଏ ବିଷୟରେ ତାଙ୍କର ସନ୍ଦେହ ହେଲା । ସେ ପ୍ରକୃତରେ ମିସ୍ ବିଙ୍ଗଲେଙ୍କୁ କିମ୍ବା ମିସେସ୍ ହର୍ଷ୍ଟଙ୍କୁ ଭଲ ପାଉନଥିଲେ । ଦୁହେଁ ଯାକ ନିତାନ୍ତ ଗର୍ବୀ ଥିଲେ । ସେମାନେ ସୁନ୍ଦରୀ, ଉଚ୍ଚଶିକ୍ଷିତା ଓ ଧନୀ । ଉଚ୍ଚ ଓ ଧନୀ ପରିବାର ସହିତ ସେମାନେ ଚଳିଆସିଛନ୍ତି । ସେମାନେ ନିଜକୁ ଅନ୍ୟମାନଙ୍କଠାରୁ ବଡ଼ ମନେକରିବା ସ୍ୱାଭାବିକ ।

ମିː ବିଙ୍ଗଲେଙ୍କର ଯେଉଁ ପୈତୃକ ସମ୍ପତ୍ତି ଥିଲା, ସେଥିରୁ ସେ ବର୍ଷକୁ ହଜାରେ ପାଉଣ୍ଡ ପାଉଥିଲେ । ଭଉଣୀ ଦୁହିଁଙ୍କର ଇଚ୍ଛା, ଭାଇ ଆଉ କିଛି ଜମି କିଣନ୍ତୁ । ଏଣେ ନେଦରଫିଲ୍ଡକୁ ଯେତେବେଳେ ଇଚ୍ଛା ସେମାନେ ନିଜ ଘର ପରି ବ୍ୟବହାର କରିପାରିବେ । ମିː ବିଙ୍ଗଲେ ଓ ମିː ଡାର୍ସି ଅନେକ ଦିନରୁ ପରସ୍ପରର ବନ୍ଧୁ । ଅବଶ୍ୟ ଦୁହିଁଙ୍କର ଚରିତ୍ର ଭିନ୍ନ । ବିଙ୍ଗଲେଙ୍କ ସହୃଦୟତା ଓ ମଧୁର ସ୍ୱଭାବ ଡାର୍ସିଙ୍କୁ ଭଲଲାଗୁଥିଲା । ଡାର୍ସିଙ୍କ ବୁଦ୍ଧି ଓ ସ୍ନେହ ଭାବରେ ବିଙ୍ଗଲେ ଆକୃଷ୍ଟ ହେଉଥିଲେ । ବିଙ୍ଗଲେ ଯେ ବୁଦ୍ଧିମାନ୍ ନଥିଲେ ତାହା ନୁହେଁ, କିନ୍ତୁ ଡାର୍ସି ଥିଲେ ତାଙ୍କଠାରୁ ବୁଦ୍ଧିମାନ୍ । ବୁଦ୍ଧି ସଙ୍ଗେ ତାଙ୍କର ଗର୍ବ ଥିଲା । ସେ ଗମ୍ଭୀର ଥିଲେ ଓ ସହଜେ ସନ୍ତୁଷ୍ଟ ହେଉ ନଥିଲେ । ଅବଶ୍ୟ ତାଙ୍କର ଆଚରଣରେ ଭଦ୍ରତା ପ୍ରକାଶପାଉଥିଲା, କିନ୍ତୁ ସେ ବନ୍ଧୁଭାବାପନ୍ନ ନଥିଲେ ।

ବିଙ୍ଗଲେ ଯେକୌଣସିଠାକୁ ଗଲେ ଲୋକଙ୍କର ଆଦର ପାଉଥିଲେ, କିନ୍ତୁ ଡାର୍ସି ଲୋକଙ୍କୁ ଅପଦସ୍ଥ କରୁଥିଲେ ।

ମେଟ୍ରନରେ ଯେଉଁ ନୃତ୍ୟୋତ୍ସବ ହେଲ, ତାହା ବିଷୟରେ ସେ ଦୁହିଁଙ୍କର ମତରୁ ସେମାନଙ୍କର ଚରିତ୍ରଗତ ପାର୍ଥକ୍ୟ ଜଣାପଡ଼ିଯାଉଥିଲା । ବିଙ୍ଗଲେଙ୍କ ମତ ହେଲା—ସେଠାରେ ଥିବା ଭଦ୍ର ଲୋକମାନଙ୍କର ବ୍ୟବହାର ଅତି ଉତ୍ତମ, ମହିଳାମାନେ ଅତି ସୁନ୍ଦରୀ । ମିସ୍ ଜେନ୍ ବେନେଟ୍ ସ୍ୱର୍ଗର ଅପ୍ସରୀ ପରି ।

ଡାର୍ସିଙ୍କ ମତରେ ସେଠାରେ ଯେତେ ପୁରୁଷ ବା ମହିଳା ଥିଲେ, ସମସ୍ତେ ଅତି ସାଧାରଣ ଶ୍ରେଣୀର । ସେ କାହାରି ପ୍ରତି ଆକୃଷ୍ଟ ହେବାର କାରଣ ନ ଥିଲା । ମିସ୍ ଜେନ ବେନେଟ୍ ସୁନ୍ଦରୀ, କିନ୍ତୁ ତାଙ୍କ ପକ୍ଷରେ ଏତେ ହସିବା ଅସୁନ୍ଦର କଥା ।

ମିସେସ୍ ହର୍ଷ୍ଟ ଓ ତାଙ୍କ ଭଉଣୀ ମିସ୍ ବେନେଟ୍ଙ୍କ ସୁନ୍ଦରପଣ ବିଷୟରେ ଏକମତ ଥିଲେ ଓ ତାଙ୍କ ସହିତ ଦେଖାକରିବାର ଇଚ୍ଛା ପ୍ରକାଶ କରିଥିଲେ ।

## ଏଲିଜାବେଥ ବେନେଟ୍ ଓ ଚାର୍ଲୋଟ୍ ଲିଉକାସ

ଲଙ୍ଗବୋର୍ଣ୍ଣଠାରୁ ଅଳ୍ପ ଦୂରରେ ଲିଉକାସ ପରିବାର ବାସ କରୁଥିଲେ । ବେନେଟ୍ ପରିବାର ସହିତ ଏହି ପରିବାରର ଖୁବ୍ ସଦ୍ଭାବ ଥିଲା । ସାର୍ ଉଇଲିୟମ ଲିଉକାସ୍ ପୂର୍ବେ ଜଣେ ଦୋକାନୀ ଥିଲେ । ମେରିଟନ୍‌ରେ ଗୋଟିଏ ଦୋକାନ କରି ସେ ବେଶ୍ ଦୁଇପଇସା ଅର୍ଜିଥିଲେ ଓ ସେହି ସହରର ମେୟର ହୋଇପାରିଥିଲେ । ଏହି ମେୟର ଥିବାବେଳେ ସେ ନାଇଟ୍ ଉପାଧି ପାଇଥିଲେ । ଉପାଧି ପାଇବା ପରେ ତାଙ୍କ ପକ୍ଷରେ ଦୋକାନ ଚଳାଇବା ଅପମାନଜନକ ବୋଧହେଲା । ତେଣୁ ସେ ମେରିଟନ ଛାଡ଼ି ଚାଲି ଆସିଲେ ଓ ଲଙ୍ଗବୋର୍ଣ୍ଣ ନିକଟରେ ଗୋଟିଏ ଘର କିଣି ରହିଲେ । ଘରଟିର ନାମ ହେଲା 'ଲିଉକାସ୍ ଲଜ୍' । ଜଣେ ନାଇଟ୍ ବୋଲି ତାଙ୍କର ଗର୍ବ ଥିଲା ସତ, କିନ୍ତୁ ତାଙ୍କର ବୃଥା ଅଭିମାନ ନଥିଲା । ସେ ଅନ୍ୟମାନଙ୍କ ପ୍ରତି ବନ୍ଧୁଭାବ ପ୍ରଦର୍ଶନ କରିବାରେ ତ୍ରୁଟି କରୁନଥିଲେ ।

ଲେଡ଼ି ଲିଉକାସ୍ ଓ ମିସେସ୍ ବେନେଟ୍ଙ୍କର ଅନ୍ତରଙ୍ଗ ବନ୍ଧୁତା ଥିଲା । ଉଭୟଙ୍କର ବୁଦ୍ଧିର ମାତ୍ରା ଠିକ୍ ଏକ ଊଣା । ଆଉ ଗୋଟିଏ ଗୁଣରେ ଦୁହିଁଙ୍କର

ଯାମ୍ୟ ଥିଲା । ଦୁହେଁ ଅନେକଗୁଡ଼ିଏ ସନ୍ତାନର ଜନନୀ । ସାର୍ ଲିଉକାସଙ୍କର ବଡ଼ ଝିଅଟିର ନାମ ସ୍ଲେଟ୍, ବୟସ ସତେଇଶ ବର୍ଷ । ଏହି ସ୍ଲେଟଙ୍କର ଏଲିଜାବେଥ ସହିତ ଭଲ ମନମିଳୁଥିଲା ।

ମେରିଟନ୍‌ରେ ବଲ୍ ନୃତ୍ୟ ହେବାର ପରଦିନ ସାର୍ ଲିଉକାସଙ୍କ ଝିଅମାନେ ଲଙ୍ଗ୍‌ବୋର୍ଣ୍ଣକୁ ଯାଇ ମିଃ ବେନେଟ୍‌ଙ୍କ ଝିଅମାନଙ୍କ ସହିତ ସେହି ନୃତ୍ୟ ବିଷୟରେ ଗଳ୍ପ ଆରମ୍ଭ କରିଦେଲେ ।

ମିସେସ୍ ବେନେଟ୍ ମିସ୍ ଲିଉକାସଙ୍କୁ କହିଲେ, "କାଲି ସନ୍ଧ୍ୟାରେ ତୁମେ ବେଶ୍ ପ୍ରଶଂସା ଅର୍ଜିଲ । ମିଃ ବିଙ୍ଗ୍‌ଲେ ପ୍ରଥମେ ତୁମକୁ ହିଁ ତାଙ୍କର ନୃତ୍ୟସଙ୍ଗିନୀ କରି ବାଛିନେଲେ ।"

"ହଁ, ସେ କଥା ସତ; କିନ୍ତୁ ସେ ତାଙ୍କର ଦ୍ୱିତୀୟଥର ନୃତ୍ୟରେ ଯାହାଙ୍କୁ ବାଛିଲେ, ତାଙ୍କ ପ୍ରତି ବେଶି ସନ୍ତୁଷ୍ଟ ଥିଲେ । ନୃତ୍ୟ ଶେଷରେ ମିଃ ରବିନସନ୍ ତାଙ୍କୁ ପଚାରିଲେ ଯେ ନୃତ୍ୟଶାଳାରେ ଶ୍ରେଷ୍ଠ ସୁନ୍ଦରୀ କିଏ । ମି. ବିଙ୍ଗ୍‌ଲେ ତତ୍‌କ୍ଷଣାତ୍ ଉତ୍ତର ଦେଲେ—କାହିଁକି, ମିସ୍ ଜେନ୍ ବେନେଟ୍ ଯେ ସର୍ବାପେକ୍ଷା ସୁନ୍ଦରୀ ଏଥିରେ ସନ୍ଦେହର କାରଣ ନାହିଁ ।"

"କହିଥିବେ । କିନ୍ତୁ ପ୍ରକୃତରେ ସେ କଥାର କିଛି ମୂଲ୍ୟ ନାହିଁ ।"

"ତୁମେ ଏଲିଜାବେଥ, ଏପରି ପ୍ରଶଂସା କେବେ ଶୁଣି ନଥିବ । ମିଃ ଡାରସିଙ୍କ ମୁହଁରୁ ଏଭଳି ପ୍ରଶଂସା ସବୁ ହେଲେ ବାହାରେ ନାହିଁ । ତୁମ ପାଇଁ ମୋ ମନରେ ଦୁଃଖ ହୁଏ ।"

ମିସେସ୍ ବେନେଟ୍ କହିଲେ, "ସେ ଯାହା କହିଲେ, ସେଥିରେ ଏଲିଜାବେଥ୍ ବିରକ୍ତ ହେବ ବୋଲି ମନେ କର ନାହିଁ । ସେ ଲୋକଟି ବଡ଼ ଅପ୍ରିୟ । ସେ ଏଲିଜାବେଥକୁ ଭଲ ନପାଇବା ବରଂ ଆମ ପକ୍ଷରେ ଭଲ । ଦେଖିଥିବ, ସେ ମିସେସ୍ ଲଙ୍ଗ୍‌ଙ୍କ ପାଖରେ ଅଧଘଣ୍ଟା କାଳ ବସିଲେ; କିନ୍ତୁ ସବୁହେଲେ ପାଟି ଫିଟାଇଲେ ନାହିଁ ।"

ଜେନ୍ କହିଲା, "ମିସ୍ ବିଙ୍ଗଲେ ମୋତେ କହୁଥିଲେ, ଡାରସି ଘନିଷ୍ଠତମ ବନ୍ଧୁଙ୍କ ଛଡ଼ା ଅନ୍ୟ କାହା ସହିତ ବେଶି କଥାବାର୍ତ୍ତା କରନ୍ତି ନାହିଁ । ବନ୍ଧୁମାନଙ୍କ ସଙ୍ଗେ ସେ ବେଶ୍ ମିଳାମିଶା କରୁଥିଲେ ।"

ମିସେସ୍ ବେନେଟ୍—"ମୋର ସେଥିରେ ବିଶ୍ୱାସ ହେଉନାହିଁ । ତାଙ୍କର ସ୍ୱଭାବ ଯେପରି ହୋଇ ନଥିଲେ ମିସେସ୍ ଲଙ୍ଗ୍ଙ୍କ ସଙ୍ଗେ କଥାବାର୍ତ୍ତା ହେଲେ ନାହିଁ କାହିଁକି ? ଲିଜି, ଆଉଥରକୁ ତାଙ୍କ ସାଥିରେ ନାଚିବାକୁ ତୁ ମନାକରିଦେବୁ ।"

ଏଲିଜାବେଥ—"ମାଆ, ସେ ବିଷୟରେ ମୁଁ ତୁମକୁ ଜବାବ୍ ଦେଇ ପାରେ । ମୁଁ କେବେହେଲେ ତାଙ୍କ ସାଥିରେ ନାଚିବାକୁ ଯିବିନାହିଁ ।

ମିସ୍ ଲିଉକାସ—"ତାଙ୍କର ଗର୍ବ କରିବାର କିଛି କାରଣ ଅଛି । ତାଙ୍କ ଭଳି ଜଣେ ଧନୀ, ଉଚ୍ଚବଂଶଜାତ, ସୁନ୍ଦର ଯୁବକ ନିଜକୁ ବଡ଼ ମନେକରିବା ଆଶ୍ଚର୍ଯ୍ୟ ନୁହେଁ । ବରଂ ମୁଁ କହିବି, ତାଙ୍କର ଗର୍ବ କରିବାର ଅଧିକାର ଅଛି ।"

ଏଲିଜାବେଥ—"ସେ କଥା ସତ । କିନ୍ତୁ ସେ ମୋର ଅଭିମାନ ଉପରେ ଆଘାତ କରି ନଥିଲେ, ମୁଁ ତାଙ୍କ ଅଭିମାନକୁ କ୍ଷମା ଦେଇପାରନ୍ତି ।"

ଏହି କଥାବାର୍ତ୍ତା ପରେ ବେନେଟ୍ ଓ ଲିଉକାସ ପରିବାର ମଧ୍ୟରେ ଆଉ କେତେ ଥର ଯିବା ଆସିବା ହେଲା । କ୍ରମଶଃ ମିସେସ୍ ହର୍ଷ୍ଟ ଓ ମିସ୍ ବିଙ୍ଗ୍ଲେ ଜେନକୁ ଅଧିକ ଭଲପାଇବାକୁ ଲାଗିଲେ । ସେମାନେ ମିସେସ୍ ବେନେଟ୍ ଓ ତାଙ୍କର ଅନ୍ୟ ତିନି ଝିଅଙ୍କୁ ଆଦୌ କେବେ ଚିହ୍ନା କରୁ ନଥିଲେ ହେଁ ବାହାରେ ଅଶ୍ରଦ୍ଧା ପ୍ରକାଶ କରୁ ନଥିଲେ । ଜେନ୍ ସେମାନଙ୍କ ସହିତ ଖୁବ୍ ମିଳାମିଶା କରୁଥିଲେ । କିନ୍ତୁ ଏଲିଜାବେଥଙ୍କର ଧାରଣା, ଲିଉକାସଙ୍କ ଝିଅମାନଙ୍କର ପ୍ରକୃତ ଉକ୍ତି; ଏପରିକି ସେମାନେ ଜେନ୍‌କୁ ମଧ୍ୟ ଟିକିଏ ହୀନ ଦୃଷ୍ଟିରେ ଦେଖନ୍ତି ।

ମିଃ ବିଙ୍ଗ୍ଲେ ଜେନ୍ ଆଡ଼କୁ ଆକୃଷ୍ଟ ଥିଲେ, ଏଥିରେ ସନ୍ଦେହ ନାହିଁ । ଜେନ୍ ମଧ୍ୟ ତାଙ୍କୁ ଭଲପାଉଥିଲେ । କିନ୍ତୁ ଜେନ୍ ସମସ୍ତଙ୍କ ପ୍ରତି ଏପରି ବ୍ୟବହାର କରୁଥିଲେ ଯେ ଦେଖିକୁ ସେ କାହାକୁ ପ୍ରକୃତରେ ଭଲ ପାଉଥିଲେ, ତାହା ଜାଣି ହେଉ ନଥିଲା । ଏଲିଜାବେଥ ତାଙ୍କର ଏହି ମତ ଚାର୍ଲୋଟ୍ ଲିଉକାସଙ୍କୁ ଜଣାଇଦେଇଥିଲେ ।

ତାହା ଶୁଣି ଚାର୍ଲୋଟ୍ କହିଲେ, "ତୁମେ କାହାକୁ ଭଲ ପାଉଛ, ସେ କଥା ଅନ୍ୟକୁ ନ ଜଣାଇବା ଭଲ । କିନ୍ତୁ ବେଳେ ବେଳେ ଏହାର ପରିଣାମ

ଖରାପ ହୁଏ । ଯଦି ଜଣେ ସ୍ତ୍ରୀ ତାର ପ୍ରେମିକଠାରୁ ନିଜ ମନର କଥା ଗୋପନ ରଖେ ତେବେ ସେ ପ୍ରେମିକକୁ ହରାଇବାର ସମ୍ଭାବନା ଅଛି । ସେ ଅମୁକକୁ ଭଲପାଉଥିଲି ବୋଲି କେହି ଜାଣିବେ ନାହିଁ ସତ, କିନ୍ତୁ ଏଥିରେ ତାର ଲାଭ ହେବ କଅଣ ? ପୁଣି, ଥରେ ପ୍ରେମର ଉଦ୍ରେକ ହେଲେ ତାକୁ ବାରମ୍ବାର ଉତ୍ତେଜନା ଦେବାକୁ ହେବ । ବିଶେଷତଃ ଜଣେ ସ୍ତ୍ରୀ ଯେତେ ପ୍ରେମ ଅନୁଭବ କରୁଥିବ, ତହିଁରୁ ଅଧିକ ଦେଖାଇ ହେବା ଦରକାର । ମିଃ ବିଙ୍ଗ୍‌ଲେ ତୁମ ବଡ ଭଉଣୀଙ୍କୁ ପସନ୍ଦ କରନ୍ତି; କିନ୍ତୁ ତାଙ୍କର ପସନ୍ଦକୁ ଉତ୍ସାହିତ କରି ପ୍ରେମରେ ପରିଣତ କରିବାକୁ ହେବ ।''

''ଯଦି ସେ ଏତିକି ବୁଝି ପାରିବେ ନାହିଁ ଯେ ଜେନ୍ ମଧ୍ୟ ତାଙ୍କୁ ପାଇବାକୁ ଇଚ୍ଛୁକ, ତେବେ ସେ ମୋ'ଠାରୁ ବଳି ନିର୍ବୋଧ ବୋଲି ବୁଝିବାକୁ ହେବ ।''

''ତୁମେ ଗୋଟିଏ କଥା ଭୁଲି ଯାଉଛ । ତୁମେ ତୁମ ଭଉଣୀକୁ ଯିନା ଭଲରୂପେ ଜାଣିଛ, ମିଃ ବିଙ୍ଗ୍‌ଲେ ଜାଣିବେ କିପରି ? ସେ ଦୁହିଁଙ୍କର କେଉଁ ସାଧାରଣ ସ୍ଥାନରେ କେବେ ଅଧଘଣ୍ଟାଏ ଘଣ୍ଟାଏ ଦେଖାହେଉଛି । ଜେନ୍‌ଙ୍କର ତାଙ୍କ ପ୍ରତି ଶ୍ରଦ୍ଧା ତାଙ୍କୁ ଅଧିକ ଜାଣିବାକୁ ଦେବା ଦରକାର । ଆଗେ ଜେନ୍ ତାଙ୍କୁ ହାତମୁଠାକୁ ଆଣନ୍ତୁ, ତାପରେ ପରସ୍ପର ପ୍ରେମରେ ପଡ଼ିଯିବେ ।''

''ଜେନ୍ ଖାଲି ଗୋଟିଏ ଧନୀ ସ୍ୱାମୀ ପାଇବାକୁ ଖୁଣ୍ଡୁଥିଲେ ସେ ଉପାୟ ଭଲ ଫଳ ଦିଅନ୍ତା । କିନ୍ତୁ ତାଙ୍କର ଇଚ୍ଛା ଭିନ୍ନ । ଏଇ ଅଳ୍ପ କେତେ ଦିନ ଭିତରେ ସେ ମିଃ ବିଙ୍ଗଲେଙ୍କର ପ୍ରକୃତ ଚରିତ୍ର ଜାଣିବାର ସୁଯୋଗ ପାଇ ନାହାନ୍ତି ।''

''ମୋ ମତରେ ତାହା ଜାଣିବା ପାଇଁ ଚେଷ୍ଟା କରିବା ଅନାବଶ୍ୟକ । ବର୍ଷେ ଦୁଇବର୍ଷ ପର୍ଯ୍ୟନ୍ତ ତାଙ୍କ ଚରିତ୍ର ଲକ୍ଷ କରି ବିବାହ କରି । ଯାହା, କାଲି ବିବାହ କରିବା ତାହା । କଥାହେଉଛି, ବୈବାହିକ ଜୀବନରେ ସୁଖୀ ହେବା ଭାଗ୍ୟ ଉପରେ ନିର୍ଭର କରେ । ବିବାହ ପୂର୍ବରୁ ଉଭୟେ ପରସ୍ପରକୁ ଜାଣିବା ଉପରେ ତାହା ନିର୍ଭର କରେ ନାହିଁ । ବରଂ ଯାହାକୁ ବିବାହ କରି ତା ସଙ୍ଗରେ ଜୀବନ କଟାଇବ, ତାର ଦୋଷ ଆଗରୁ ନଜାଣିଲେ ଭଲ ।''

"ବ୍ଲେଁଟ, ତୁମ କଥା ଶୁଣି ମୋତେ ହସମାଡ଼ୁଛି । ତୁମେ ଯାହା କହୁଛ, ତାହା ଆଦୌ ଠିକ୍ ନୁହେ । ତୁମେ କେବେହେଲେ ଏହିପରି ଅବସ୍ଥାରେ ବିବାହ କରନ୍ତ ନାହିଁ ।"

## ମି: ଡାର୍‌ସି ଓ ଏଲିଜାବେଥ

ମି: ବିଙ୍ଗ୍‌ଲେ ଜେନ୍‌ ପ୍ରତି କେତେଦୂର ଆସକ୍ତ ତାହା ଏଲିଜାବେଥ ଲକ୍ଷ୍ୟ କରୁଥିଲେ; କିନ୍ତୁ ମି. ଡ଼ାର୍‌ସି ଯେ ତାଙ୍କ ପ୍ରତି ଅନୁରକ୍ତ ଏକଥା ସେ ଆଦୌ ଜାଣି ପାରି ନଥିଲେ । ପ୍ରଥମେ ମି: ଡ଼ାର୍‌ସି ଏଲିଜାବେଥ ସୁନ୍ଦରୀ ବୋଲି ସ୍ୱୀକାର କରୁ ନଥିଲେ । ପରେ ଦେଖା ହେଲାକ୍ଷଣି ସେ ଏଲିଜାବେଥ୍‌ଙ୍କର ଦୋଷ ଖୋଜିବାକୁ ଲାଗିଲେ । ସେ ମନେ ମନେ ସ୍ଥିର କଲେ ଯେ ତାର ଗୋଟିଏ ହେଲେ ଗୁଣ ନାହିଁ । କିନ୍ତୁ ଏତିକିବେଳେ ତାଙ୍କର ଧାରଣା ହେଲା, ଏଲିଜାବେଥଙ୍କର ଗାଢ଼ ନୀଳ ବର୍ଣ୍ଣର ଆଖି ହେତୁ ତାଙ୍କର ମୁହଁରେ ଗୋଟାଏ ପ୍ରକାର ସୌନ୍ଦର୍ଯ୍ୟ ପ୍ରକାଶ ପାଉଛି; ଏହା ବୁଦ୍ଧିମତ୍ତାର ପରିଚାୟକ । ଏହା ପରେ ସେ ତାଙ୍କର ଆହୁ କେତୋଟି ଗୁଣର ପରିଚୟ ପାଇଲେ । ତାଙ୍କର ଶରୀରଗଠନ ଏକବାରେ ନିର୍ଦ୍ଦୋଷ ନହେଲେ ହେଁ ସନ୍ତୋଷଜନକ । ଚାଲିଚଳଣରେ ଆଡ଼ମ୍ବର ନଥିଲେ ହେଁ ତାହା ହୃଦୟଗ୍ରାହୀ ଓ ଆନନ୍ଦଦାୟକ ।

ମି: ଡାର୍‌ସି ତାଙ୍କ ବିଷୟରେ ଆଗ୍ରହୀ ବୋଲି ଏଲିଜାବେଥ ଜାଣି ପାରି ନଥିଲେ । ସେ କେବଳ ମି. ଡାର୍‌ସିଙ୍କର ଅପ୍ରୀତିକର ଆଚରଣ, ବିଶେଷତଃ ତାଙ୍କ ସହିତ ନାଚିବାକୁ ପ୍ରତ୍ୟାଖ୍ୟାନ କରିବା କଥା ଭାବୁଥିଲେ ।

ମି: ଡାର୍‌ସି ଏଲିଜାବେଥଙ୍କୁ ଭଲ ଭାବରେ ଜାଣିବାକୁ ଚେଷ୍ଟା କରୁଥିଲେ । ଏଲିଜାବେଥ କାହାରି ସଙ୍ଗେ କଥାବାର୍ତ୍ତା ହେଉଥିଲା ବେଳେ ସେ ପାଖରେ ରହି ଶୁଣୁଥିଲେ ।

ଦିନେ ସାର୍ ଉଇଲିଅମ ଗୋଟିଏ ଭୋଜି ଦେଇଥିଲେ । ଏଲିଜାବେଥ ସେଠାକୁ ଯାଇଥିଲେ । ସେ ବ୍ଲେଁଟ୍‌ଙ୍କୁ କହିଲେ, "ମି: ଡାର୍‌ସି ଅନ୍ୟକୁ

ସମାଲୋଚନା କରିବାରେ ଧରନ୍ତର । ତାଙ୍କୁ ମୁଁ ବିରକ୍ତ କରିବି; ତାହା ନ ହେଲେ ମୁଁ ତାଙ୍କ ସମାଲୋଚନାକୁ ଉପଭୋଗ କରିପାରିବି ।"

ସେ ସନ୍ଧ୍ୟାରେ ଲୁଇଁଙ୍କ ଅନୁରୋଧରେ ଏଲିଜାବେଥ କେତୋଟି ଗୀତ ଗାଇଲେ । ତାହା ଶୁଣି ଅତିଥିମାନେ ସନ୍ତୁଷ୍ଟ ହେଲେ । ଗୀତ ପରେ ଯୁବକ ଯୁବତୀମାନେ ନୃତ୍ୟରେ ରତ ହେଲେ । ମିଃ ଡାର୍ସି ସେମାନଙ୍କ ନିକଟରେ ଥିଲେ । ନୃତ୍ୟରେ ତାଙ୍କର ମନ ନଥିଲା, ସେ ଗଳ୍ପ କରିବାକୁ ଚାହୁଁଥିଲେ ।

ସାର୍ ଉଇଲିଅମ୍ କହିଲେ, "ମି. ଡାର୍ସି, ଦେଖିଲ, ଏମାନେ କିପରି ଆନନ୍ଦରେ ନାଚୁଛନ୍ତି । ମୋର ମନେହୁଏ, ନୃତ୍ୟ ହେଉଛି ସଭ୍ୟ ମାନବର ଏକ ପ୍ରଧାନ ଅବଦାନ ।"

ମିଃ ଡାରସି—"ନିଶ୍ଚୟ । ଅର୍ଦ୍ଧ ସଭ୍ୟ ଜାତିରେ ମଧ୍ୟ ନୃତ୍ୟର ଆଦର ଅଛି । ଏପରି କି ନିତାନ୍ତ ଅସଭ୍ୟମାନେ ସୁଦ୍ଧା ନୃତ୍ୟ କରିଥାନ୍ତି ।"

ସାର୍ ଉଇଲିୟମ ଟିକିଏ ହସିଦେଇ କହିଲେ, "ଦେଖ, ତୁମ ବନ୍ଧୁ ମିଃ ବିଙ୍ଗଲେ ନୃତ୍ୟରେ ଯୋଗଦେବାକୁ ବାହାରିଲେଣି । ସେ ଖୁବ୍ ଭଲ ନାଚନ୍ତି । ତୁମେ ମଧ୍ୟ ଏ ବିଦ୍ୟାରେ ନିପୁଣ—ନୁହେଁ ?"

ମିଃ ଡାର୍ସି କୌଣସି ଉତ୍ତର ଦେଲେ ନାହିଁ । ଏଲିଜାବେଥ ପାଖରେ ଯାଉଥିଲେ । ହଠାତ୍ ସାର ଉଇଲିୟମ ତାଙ୍କୁ ଡ଼ାକି କହିଲେ, "ମିସ୍ ଏଲିଜାବେଥ, ତୁମେ ନାଚୁନାହଁ କାହିଁକି ?" ସଙ୍ଗେ ସଙ୍ଗେ ମିଃ ଡ଼ାରସିଙ୍କୁ କହିଲେ, "ମୁଁ ଆପଣଙ୍କୁ ମିସ୍ ଏଲିଜାବେଥଙ୍କ ସହିତ ପରିଚିତ କରିଦେଏ । ତାଙ୍କ ସଙ୍ଗରେ ଆପଣ ନୃତ୍ୟ କରନ୍ତୁ । ତାଙ୍କ ଭଳି ସୁନ୍ଦରୀଙ୍କ ସହିତ ନାଚିବାକୁ ଆପଣ ମନା କରିବେ ନାହିଁ ବୋଲି ମୋର ଦୃଢ଼ ବିଶ୍ୱାସ ।" ଏହା କହି ସେ ଦୁହିଁଙ୍କ ହାତ ମିଳାଇ ଦେଲେ । ମିସ୍ ଏଲିଜାବେଥ ପଛକୁ ଘୁଞ୍ଚି ଆସି ସାର୍ ଉଇଲିୟମଙ୍କୁ କହିଲେ, "ମୋର ପ୍ରକୃତରେ ନାଚିବାକୁ ଇଚ୍ଛା ନାହିଁ । ଆପଣ ମନେ କରନ୍ତୁ ନାହିଁ ଯେ ଜଣେ ନୃତ୍ୟସଙ୍ଗୀ ପାଇବା ଆଶାରେ ମୁଁ ଏ ଆଡ଼କୁ ଆସୁଥିଲି ।"

ମି. ଡ଼ାର୍ସି ଭଦ୍ର ଭାବରେ ମିସ୍ ଏଲିଜାବେଥଙ୍କୁ ବିଶେଷ ଅନୁରୋଧ କଲେ, କିନ୍ତୁ ମିସ୍ ଏଲିଜାବେଥ କୌଣସି ମତେ ରାଜି ହେଲେ ନାହିଁ । ସାର୍ ଉଇଲିୟମ ପୁଣି ଅନୁରୋଧ କରି କହିଲେ, "ମିସ୍ ଏଲିଜାବେଥ, ତୁମେ ଖୁବ୍ ଭଲ ନାଚ ଜାଣ । ମି: ଡ଼ାର୍ସି ସାଧାରଣତଃ ନାଚିବାକୁ ଇଚ୍ଛା କରନ୍ତି ନାହିଁ । କିନ୍ତୁ ତୁମ ସହିତ ଅଳ୍ପ ସମୟ ପାଇଁ ନାଚିବାକୁ ତାଙ୍କର ଆପତ୍ତି ହେବ ନାହିଁ ।"

ଏଲିଜାବେଥ ସାମାନ୍ୟ ହସିଦେଇ କହିଲେ, "ମି: ଡାର୍ସି ଜଣେ ବିଶିଷ୍ଟ ଭଦ୍ରଲୋକ । କିନ୍ତୁ ମୁଁ ନାଚିବାକୁ ଇଚ୍ଛୁକ ନୁହେଁ ।"

ଏଲିଜାବେଥ ନାଚିବାକୁ ମନା କରିଦେବାରୁ ମି: ଡାର୍ସି ଯେ ତାଙ୍କ ପ୍ରତି ଖରାପ ଧାରଣା ପୋଷଣ କଲେ ତାହା ନୁହେଁ । ଏହି ସମୟରେ ମିସ୍ ବିଙ୍ଗ୍‌ଲେ ଆସି କହିଲେ, "ମି: ଡାର୍ସି, ମୁଁ ତୁମ ମନର ଭାବ ଜାଣିପାରୁଛି ।"

"ସେ ବିଷୟରେ ମୋର ସନ୍ଦେହ ।"

"ତୁମେ ଭାବୁଛ, ଏପରି ଲୋକଙ୍କ ଭିତରେ କେତେ ଦିନ ସନ୍ଧ୍ୟାବେଳେ କାଟିପାରିବ ? ମୁଁ ତୁମ ସହିତ ଏ ବିଷୟରେ ଏକମତ । ମୋତେ ମଧ୍ୟ ବଡ଼ ବିରକ୍ତିକର ବୋଧହେଉଛି । ବାଜେ ଗପ, ବୃଥା ଗୋଳମାଳ । ଲୋକମାନଙ୍କର ଇତର ସ୍ୱଭାବ—ସେଥିରେ ପୁଣି ଅହମିକା । ତୁମର ମତ କଅଣ କହିଲ, ମି. ଡାର୍ସି ?"

"ତୁମର ଅନୁମାନ ଏକବାରେ ଭୁଲ । ମୁଁ ବରଂ ଅନ୍ୟ ପ୍ରକାର ଭାବୁଥିଲି । କୌଣସି ସୁନ୍ଦରୀ ରମଣୀର ସୁନ୍ଦର ଆଖି ଦୁଇଟି କେତେ ଆନନ୍ଦଦାୟକ ହୋଇପାରେ, ତାହାହିଁ ମୁଁ ଚିନ୍ତା କରୁଥିଲି ।"

ମିସ୍ ବିଙ୍ଗ୍‌ଲେ ମି. ଡାର୍ସିଙ୍କ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ପଚାରିଲେ, "ସେହି ସୁନ୍ଦରୀ ମହିଳାଟି କିଏ କହିପାରିବେ କି ?"

ମି: ଡାର୍ସି ହଠାତ୍ କହିପକାଇଲେ, "ମିସ୍ ଏଲିଜାବେଥ ବେନେଟ୍ ।"

"ମିସ୍ ଏଲିଜାବେଥ ବେନେଟ୍ ! ମୋତେ ଆଶ୍ଚର୍ଯ୍ୟ ଲାଗୁଛି । କେବେଠାରୁ ସେ ତୁମର ଏତେ ପ୍ରିୟ ହେଲେଣି ? ବେଶ୍, କେବେ ବିବାହ ହେବ ?"

"ତୁମେ ଏଭଳି ପ୍ରଶ୍ନ କରିବ ବୋଲି ମୁଁ ଜାଣିଥିଲି । ନାରୀମାନଙ୍କର

କଳ୍ପନା ଶକ୍ତି ପ୍ରବଳ । ପ୍ରଶଂସା କରିବାରୁ ଭଲପାଇବା ଓ ଭଲପାଇବାରୁ ବିବାହ ମୁହୂର୍ତ୍ତିକରେ ସେମାନେ କଳ୍ପନା କରିଯାନ୍ତି ।"

"ତୁମେ ଯଦି ପରିହାସ ନକରି ଯଥାର୍ଥରେ କହୁଥାଅ, ତେବେ ମୁଁ ମନେ କରିବି ଯେ ତୁମ ଦୁହିଁଙ୍କର ବିବାହ ସ୍ଥିର ହୋଇଯାଇଅଛି । ଗୋଟିଏ ଭଲ ଶାଶୂ ପାଇବ; ସେ ପୁଣି ତୁମ ସେମ୍ବର୍‌ରେ ରହିବେ ।"

ମିଃ ଡାର୍‌ସି ଏ କଥା ପ୍ରତି ବିଶେଷ ମନୋଯୋଗ ଦେଉ ନଥିଲେ । କିନ୍ତୁ ଦୁହିଁଙ୍କ ଭିତରେ କିଛି ସମୟ ଯାଏ ଖୁବ୍ ପରିହାସ ଚାଲିଲା ।

## ନେଦରଫିଲ୍‌ଡ଼ରେ ଜେନ୍

ମେରିଟନ ଲଙ୍ଗବୋର୍ଣ୍ଣଠାରୁ ଏକ ମାଇଲ ଦୂର । ସେଠାରେ ମିସେସ୍ ଫିଲିପ୍‌ସ ରହୁଥିଲେ । ମିସେସ୍ ଫିଲିପ୍‌ସ ମିସେସ୍ ବେନେଟ୍‌ଙ୍କର ଭଉଣୀ ହୋଇଥିବାରୁ କିଟି ଓ ଲିଡ଼ିଆ ପ୍ରାୟ ପ୍ରତିଦିନ ମାଉସୀଙ୍କ ଘରକୁ ଯାଉଥିଲେ । ମି. ଫିଲିପ୍‌ସ ମେରିଟନର ଜଣେ ଓକିଲ ।

କିଟି ଓ ଲିଡ଼ିଆ ଘରକୁ ଆସି ମେରିଟନର ଖବର କହୁଥିଲେ । ଶୁଣାଗଲା ଯେ ଗୋଟିଏ ସୈନ୍ୟଦଳ କେତେ ଦିନ ହେଲା ମେରିଟନରେ ରହିଛନ୍ତି । ଶୀତଦିନ ଶେଷ ପର୍ଯ୍ୟନ୍ତ ସେମାନେ ସେଠାରେ ରହିବେ । ପ୍ରତିଦିନ କିଟି ଓ ଲିଡ଼ିଆଠାରୁ ଏହି ସୈନ୍ୟଦଳ ଓ ସେଥିରେ ଥିବା ଅଫିସରମାନଙ୍କ ବିଷୟ ଶୁଣିବାକୁ ମିଳୁଥିଲା । କ୍ରମେ ସେ ଦୁହିଁଙ୍କର ଅଫିସରମାନଙ୍କ ସହିତ ବ୍ୟକ୍ତିଗତ ପରିଚୟ ହୋଇଗଲେ ଓ ସେମାନେ କେବଳ ଏହି ଅଫିସରମାନଙ୍କ ବିଷୟରେ ଗପ କରିବାକୁ ଲାଗିଲେ । ସେମାନଙ୍କ ମାଆଙ୍କ ଆଖିଆଗରେ ଥିଲା, ମିଃ ବିଙ୍ଗ୍‌ଲେଙ୍କ ବିପୁଳ ସମ୍ପତ୍ତି; କିନ୍ତୁ ଝିଅ ଦୁହିଁଙ୍କ ଆଖିରେ ଜଣେ ଜୁନିଅର ଅଫିସରଙ୍କ ପୋଷାକ ତୁଳନାରେ ମି· ବିଙ୍ଗ୍‌ଲେଙ୍କ ସମ୍ପତ୍ତିର ମୂଲ୍ୟ ତୁଚ୍ଛ ।

ଦିନେ ସକାଳେ ଝିଅ ଦୁହେଁ ଅଫିସରମାନଙ୍କ ବିଷୟରେ ଗଳ୍ପ କରୁଥିଲେ । ତାହା ଶୁଣି ମିଃ ବେନେଟ୍ କହିଲେ, "ତୁମ ଭଳି ଦିଓଟି ନିର୍ବୋଧ ଝିଅ ଆଉ କେଉଁଠି ଦେଖା ନଥିବେ । ଅନେକ ଦିନୁ ମୋର ଏହି ସନ୍ଦେହ ଥିଲା; ଏବେ ସେ ବିଷୟରେ ମୁଁ ନିଃସନ୍ଦେହ ।"

ମିସେସ୍ ବେନେଟ୍ ଧୈର୍ଯ୍ୟ ଧରି ନପାରି କହିଲେ, "ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ନିଜ ଝିଅ ଦୁଇଟାଙ୍କୁ ନିର୍ବୋଧ ବୋଲି କହୁଛ କିପରି ? ଆମର ସବୁ ଝିଅ ଖୁବ୍ ବୁଦ୍ଧିମତୀ ।"

"ତୁମ ମତ ସହିତ ଏଇ ଗୋଟିଏ ବିଷୟରେ ମୋର ମତ ଭିନ୍ନ । ତୁମେ ଯାହା କହୁନା କାହିଁକି, ଆମର ସାନଝିଅ ଦୁଇଟି ନିତାନ୍ତ ନିର୍ବୋଧ ।"

ମିସେସ୍ ବେନେଟ୍ ପ୍ରତିବାଦ କରିବାକୁ ଯାଉଥିଲେ । ଏହି ସମୟରେ ଜଣେ ଚାକର ଆସି ଜେନ୍‌ଙ୍କୁ ଖଣ୍ଡିଏ ଚିଠି ଦେଲା । ଚିଠିଟି ନେଦରଫିଲ୍ଡରୁ ଆସିଥିଲା । ଚାକର ଉତ୍ତର ନେବାକୁ ଅପେକ୍ଷା କରି ରହିଲା ।

ମିସେସ୍ ବେନେଟ୍ ମନେ ମନେ ସ୍ଥିର କରିନେଲେ ଯେ ମିଃ ବିଙ୍ଗଲେ ଜେନ୍‌ପାଖକୁ ଚିଠି ଦେଇଥିବେ । ସେ ଧୈର୍ଯ୍ୟ ଧରି ନପାରି ପଚାରିଲେ, "ଜେନ୍, କିଏ ଚିଠି ଦେଇଛନ୍ତି ? ମି. ବିଙ୍ଗଲେ ଭଲ ଅଛନ୍ତି ତ ? କଅଣ ଲେଖା-ହୋଇଛି ଶୀଘ୍ର କହ ।"

"ମିସ୍ ବିଙ୍ଗଲେ ଚିଠି ଦେଇଛନ୍ତି । ତାଙ୍କ ଘରର ପୁରୁଷମାନେ ଅଫିସରମାନଙ୍କ ଭୋଜିକୁ ଯାଇଛନ୍ତି । ତେଣୁ ମିସ୍ ବିଙ୍ଗଲେ ଓ ମିସେସ୍ ହର୍ଷ୍ଟ ମୋତେ ଭୋଜନ ପାଇଁ ନିମନ୍ତ୍ରଣ କରିଛନ୍ତି ।"

"ପୁରୁଷମାନେ ନଥିବେ—ଏପରି ଭୋଜିରେ କି ଲାଭ ?"

"ମାଆ, ମୁଁ ଗାଡ଼ିଟା ନେଇପାରିବି କି ?"

"ନା, ତୁ ଘୋଡ଼ାରେ ବସି ଯାଅ । ବର୍ଷା ହେବାର ସମ୍ଭାବନା ଅଛି । ତାହାହେଲେ ତୁ ରାତିଟା ସେହିଠାରେ କଟାଇପାରିବୁ ।"

ଜେନ୍ ଅଗତ୍ୟା ଘୋଡାରେ ବସି ଗଲେ । ଏଣେ ମିସେସ୍ ବେନେଟ୍ ଈଶ୍ୱରଙ୍କୁ ଡାକୁଥାନ୍ତି—ଶୀଘ୍ର ବର୍ଷା ହେଉ । ବୋଧହୁଏ ଈଶ୍ୱର ତାଙ୍କ ଡାକ ଶୁଣିଲେ । ଜେନ୍ ବାହାରିଯିବାର ଅଳ୍ପ ସମୟ ପରେ ଘୋର ବର୍ଷା ହେଲା । ଜେନ୍‌ଙ୍କ ଭଉଣୀମାନେ ତାଙ୍କ ଅବସ୍ଥା ଚିନ୍ତା କରି ଦୁଃଖିତ ହେଲେ । କିନ୍ତୁ ମାଆଙ୍କ ମନରେ ଭାରି ଆନନ୍ଦ । ଜେନ୍ ନେଦରଫିଲ୍ଡରେ ରାତିଟି ରହିବାକୁ ବାଧ୍ୟ ହେବ ।

ମିସେସ୍ ବେନେଟ୍‌ଙ୍କର ଆଶା ପୂର୍ଣ୍ଣ ହେଲା । ଜେନ୍ ସେ ରାତିରେ ଫେରିଲା ନାହିଁ । ପରଦିନ ସକାଳ ବେଳକୁ ଜଣେ ଚାକର ଜେନ୍‌ଙ୍କ ପାଖରୁ ଖଣ୍ଡିଏ

ରଟି ଯେନ ପଡ଼ିଥିଲି । ସେଥିରୁ ଜଣାଗଲା, ଗତ ରାତିରେ ବର୍ଷାରେ ଭିଜିବା ଫଳରେ ତାଙ୍କର ଜ୍ୱରହୋଇଛି । ନେଦରଫିଲ୍ଡ଼ର ବନ୍ଧୁମାନଙ୍କର ଇଚ୍ଛା ସେ ଭଲହେବାଯାଏ ସେଇଠାରେ ରହିବେ ।

ମିସେସ୍ ବେନେଟ୍ ସ୍ୱାମୀଙ୍କୁ କହିଲେ, "ଦେଖିଲ, କି ଶୁଭ ଖବର ! ଜେନ୍‌ର ରୋଗ ଯଦି ବଢ଼େ ଏପରିକି ଯଦି ତାର ମୃତ୍ୟୁ ହୁଏ, ତେବେବି ସାନ୍ତ୍ୱନାର କାରଣ ଅଛି । ମି. ବିଙ୍ଗ୍‌ଲେଙ୍କୁ କରଗତ କରିବାକୁ ଯାଇ ତାର ଏପରି ଘଟିଲା ।"

"ତାର ମୃତ୍ୟୁ ହେବ — ଏପରି କଳ୍ପନା ମୋ ମନରେ ସ୍ଥାନ ପାଇନାହିଁ । ମୁଁ ଜାଣେ, ସେଠାରେ ତାର ଉପଯୁକ୍ତ ଯତ୍ନର ଅଭାବ ହେବ ନାହିଁ । ନେଦରଫିଲ୍ଡ଼ରେ ଥିବାଯାକେ ତାପାଇଁ ଚିନ୍ତା କରିବା ଅନାବଶ୍ୟକ ।"

ଏଲିଜାବେଥଙ୍କ ମନ ଅସ୍ଥିର । ସେ ଭଉଣୀକୁ ଦେଖିବା ପାଇଁ ବାହାରିଲେ । ଗାଡ଼ି ଅନ୍ୟ କାମରେ ଲାଗିଥିଲା । ସେ ଚାଲି ଚାଲି ନେଦରଫିଲ୍ଡ଼କୁ ଯିବେ ବୋଲି ସ୍ଥିର କଲେ ।

ତାହା ଶୁଣି ମାଆ କହିଲେ, "ତୋର ଯେଉଁ ବୁଦ୍ଧି ? ସେଠି ପହଞ୍ଚିଲା-ବେଳକୁ ତୋ ପୋଷାକର ଅବସ୍ଥା କଅଣ ହୋଇଥିବ ? ଦେହରେ କେତେ ଧୂଳି ଲାଗିଥିବ ? ଏପରି ଅବସ୍ଥାରେ କାହାକୁ ଦେଖାଦେବୁ କପରି ?"

"ମୁଁ ଯାଉଛି ମୋ ଭଉଣୀକୁ ଦେଖିବା ପାଇଁ, ଅନ୍ୟମାନଙ୍କୁ ଦେଖା ଦେବାପାଇଁ ମୁଁ ଯାଉନାହିଁ । ତିନି ମାଇଲ ବାଟ ମୁଁ ସହଜରେ ଚାଲିଯାଇ-ପାରିବି । ସନ୍ଧ୍ୟାରେ ଖାଇଲାବେଳକୁ ଫେରିଆସିଥିବି ।"

ଏଲିଜାବେଥ୍ ନେଦରଫିଲ୍ଡରେ ପହଞ୍ଚିଲାବେଳକୁ ଚାଲି ଚାଲି ସେ କ୍ଳାନ୍ତ ହୋଇପଡ଼ିଥିଲେ; ତାଙ୍କର ପୋଷାକ ନିତାନ୍ତ ମଇଳା ଦିଶୁଥିଲା । ମୁହଁ ନାଲି ପଡ଼ିଯାଇଥିଲା । ସେତେବେଳକୁ ସମସ୍ତେ ଖାଇବସିଥିଲେ; କେବଳ ଜେନ୍ ଜ୍ୱର ହେତୁରୁ ସେଠାରେ ନଥିଲେ । ଏଲିଜାବେଥ୍‌ଙ୍କୁ ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ମିସ୍ ବିଙ୍ଗ୍‌ଲେ ଓ ମିସେସ୍ ହର୍ଷ୍ଟ ବିଶ୍ୱାସ କରିପାରିଲେ ନାହିଁ ଯେ ଗୋଟାଏ ଝିଅ ତିନି ମାଇଲ ବାଟ ଚାଲି ଚାଲି ଆସିଛି । ପାଗ ଖରାପ, ସେଥିରେ ପୁଣି ଏକୁଟିଆ ଆସିଲା କପରି ? ଏଲିଜାବେଥ ବୁଝିପାରିଥିଲେ ଯେ

ତାଙ୍କୁ ଏମାନେ ଘୃଣା କରୁଥିବେ । କିନ୍ତୁ ସେ ଦୁହେଁ ଆଦର ଦେଖାଇ ତାଙ୍କୁ ଖାଇବାକୁ ଡାକନେଲେ । ମି· ବିଙ୍ଗ୍‌ଲେ ତାଙ୍କୁ ଅତି ମାତ୍ରାରେ ଭଦ୍ରତା ଦେଖାଇଲେ ଓ ଆଦରରେ ତାଙ୍କ ସଙ୍ଗେ କଥାବାର୍ତ୍ତା କଲେ । ମି. ଡାର୍‌ସି ଓ ମି. ହର୍ଷ୍ଟ କିଛି କହିଲେ ନାହିଁ । ଗୁଳ ଗୁଳ ଆସିଥିବା ହେତୁ ଏଲିଜାବେଥ୍‌ଙ୍କ ମୁହଁର ବର୍ଣ୍ଣରେ ଯେଉଁ ପରିବର୍ତ୍ତନ ଆସିଥିଲା, ତାକୁ ଲକ୍ଷ୍ୟ କରିବାରେ ମି. ଡ଼ାର୍‌ସି ମଗ୍ନ ଥାଇଥିଲେ; ଆଉ ମି. ହର୍ଷ୍ଟଙ୍କ ମନରେ ଏକମାତ୍ର ଖାଇବା ଚିନ୍ତା ଥିଲା ।

ଜେନ୍‌ଙ୍କର ଜ୍ୱର ବଢ଼ିଯାଇଥିଲା । ସେ ବିଛଣାରେ ପଡ଼ି ଛଟପଟ ହେଉଥିଲେ । ଏଲିଜାବେଥ୍ ଦିନଯାକ ତାଙ୍କ ପାଖରେ ରହିଲେ । ଡାକ୍ତର ଆସି ଜେନ୍‌ଙ୍କୁ ଔଷଧ ଖାଇବାକୁ ଦେଲେ ଓ ବିଛଣାରେ ପଡ଼ିରହିବାକୁ ପରାମର୍ଶ ଦେଇଗଲେ । ଦିନ ତିନିଟାବେଳକୁ ଏଲିଜାବେଥ୍ ଘରକୁ ଫେରିଯିବାକୁ ବାହାରିଥିଲେ; କିନ୍ତୁ ଜେନ୍ କହିଲେ ସେ ପାଖରେ ଥିଲେ ତାଙ୍କୁ ଭଲଲାଗିବ । ତେଣୁ ରାତିରେ ଏଲିଜାବେଥ୍ ସେଠାରେ ରହିବେ ବୋଲି ସ୍ଥିର ହେଲା । ବେନେଟ୍‌ଙ୍କ ଘରକୁ ଖବର ପଠାଇଦିଆଗଲା ।

## ନେଦର୍‌ଫିଲ୍‌ଡରେ ଏଲିଜାବେଥ୍

ସନ୍ଧ୍ୟାବେଳେ ସମସ୍ତେ ଖାଇବାକୁ ବସିଲେ । ଏଲିଜାବେଥ୍ ମଧ୍ୟ ସେମାନଙ୍କ ସାଥିରେ ବସିଲେ । ଜେନ୍‌ଙ୍କ ସ୍ୱାସ୍ଥ୍ୟ ବିଷୟରେ ପଡ଼ିଲା । ତାଙ୍କ ଦେହ ଖରାପ ଥିବା ଶୁଣି ସମସ୍ତେ ଦୁଃଖ ପ୍ରକାଶ କଲେ । ବିଙ୍ଗଲେଙ୍କ ଦୁଇଭଉଣୀଯାକ ବିରକ୍ତି ମଧ୍ୟ ପ୍ରକାଶ କଲେ । ସେମାନଙ୍କର ଜେନ୍‌ଙ୍କ ପ୍ରତି ସହାନୁଭୂତି ବା ଆନ୍ତରିକତା ନଥିଲା । ଏଲିଜାବେଥ୍ ମନେ ମନେ ସେ ଦୁହିଁଙ୍କ ଆଚରଣରେ ଅସନ୍ତୁଷ୍ଟ ହେଲେ ।

କେବଳ ମି ବିଙ୍ଗ୍‌ଲେ ଜେନ୍‌ଙ୍କ ଜ୍ୱର ସମ୍ବାଦରେ ଆନ୍ତରିକ ଦୁଃଖ ପ୍ରକାଶ କରୁଥିଲେ । ଏଲିଜାବେଥ୍‌ଙ୍କ ପ୍ରତି ତାଙ୍କର ବ୍ୟବହାରରେ ଆଦର ଥିଲା । ଅନ୍ୟମାନେ ତାଙ୍କ ବିଷୟରେ ଉଦାସୀନ ଥିଲପରି ମନେହେଉଥିଲା ।

ସେମାନେ ମି. ଡାର୍‌ସିଙ୍କୁ ସନ୍ତୁଷ୍ଟ କରିବାରେ ବ୍ୟସ୍ତ ଥିଲେ । ମି. ହ୍ରର୍ଷ୍ଟଙ୍କର ଖାଇବା, ପିଇବା ଛଡ଼ା ଅନ୍ୟ କୌଣସି ଚିନ୍ତା ନଥିଲା ।

ଏଲିଜାବେଥ୍ ଖାଇସାରି ଜେନ୍ ପାଖକୁ ଚାଲିଯିବା ପରେ ମିସ୍ ବିଙ୍ଗଲେ ତାଙ୍କର ନାନା ଉକ୍ତ ସମାଲୋଚନା କରି କହିଲେ—"ତାର ବ୍ୟବହାର ଭଲ ନୁହେଁ, ତାର ମନରେ ବଡ଼ ଅଭିମାନ ଅଛି । ଗୁଣ ବୋଲି ଯଦି କିଛି ଥାଏ, ତାହା ହେଉଛି ଘୋଡ଼ାପରି ଚାଲିବା । ଭଉଣୀକୁ କିଏ ଅଣ୍ଡା ଧରିଛି ବୋଲି ଏତେ ବାଟ ଚାଲି ଚାଲି ଆସିଲା । ଦେଖିଲ, ତା ମୁଣ୍ଡରେ କେତେ ଧୂଳି ! ତା ବ୍ଲାଉଜରେ କେତେ ମଇଳା ଲାଗିଛି ।"

ମି: ବିଙ୍ଗଲି କହିଲେ, "ତୁମ କଥା ଠିକ୍ ହୋଇପାରେ । ମୁଁ ଏସବୁ ଲକ୍ଷ୍ୟ କରିନି । ସେ ଆସିଲାବେଳେ ମୁଁ ତାଙ୍କୁ ଚାହିଁଥିଲି । ସେପରି କିଛି ଦୋଷ ଦେଖିପାରିଲି ନାହିଁ । ମୁଁ ତାଙ୍କ ବ୍ଲାଉଜଆଡ଼କୁ ଆଦୌ ଚାହିଁ ନାହିଁ ।"

ମିସ୍ ବିଙ୍ଗଲେ ସମର୍ଥନ ଲୋଡ଼ି କହିଲେ, "ମି. ଡାର୍‌ସି, ତୁମେ ନିଶ୍ଚୟ ଦେଖିଥିବ, ତାର ବ୍ଲାଉଜ କେଡ଼େ ମଇଳା ଦିଶୁଥିଲା । କହ ଦେଖି ବିଙ୍ଗଲେ, ତୁମ ଭଉଣୀ ଏପରି ବ୍ଲାଉଜ ପିନ୍ଧିଥିଲେ ତୁମକୁ କ'ଣ ଭଲଲାଗନ୍ତା ?"

ମିଷ୍ଟର ବିଙ୍ଗଲେ କହିଲେ, "ଯାହାହେଉ, ତାଙ୍କର ଭଉଣୀ ପ୍ରତି ସ୍ନେହ ପ୍ରଶଂସାର କଥା ।"

ମିସ୍ ବିଙ୍ଗଲେ—"ମି. ଡାର୍‌ସି, ମୋର ମନେହୁଏ ଏଣିକି ତୁମେ ତାର ଆଖି ଯୋଡ଼ିକର ସେତେ ପ୍ରଶଂସା କରିବ ନାହିଁ ।"

ମି. ଡାର୍‌ସି—"କରିବ ନାହିଁ କାହିଁକି ? ତାଙ୍କ ଆଖି ପୂର୍ବପରି ଉଜ୍ଜ୍ୱଳ ଦିଶୁଥିଲା ।"

ମିସେସ୍ ହ୍ରର୍ଷ୍ଟ କଥାର ମୁଁହ ବୁଲାଇଦେଇ କହିଲେ, "ଜେନ୍ ଗୋଟିଏ ଭଲ ଝିଅ । ମୁଁ ତାକୁ ଖୁବ୍ ସୁଖ ପାଏ । ସେ ଭଲ ପାତ୍ରରେ ବିବାହେବା ମୋର ଇଚ୍ଛା; କିନ୍ତୁ ତାର ବାପ ମାଆ ଯେପରି ଲୋକ ସେଥିରେ ମୁଁ ସେ ଆଶା ଦେଖିପାରୁନାହିଁ । ସେଥିରେ ପୁଣି ତାର ଗୋଟାଏ ଦାଦା ମେରିଟନ୍‌ର ଜଣେ ଓକିଲ, ଆଉ ଜଣେ କେଉଁଠି ଚିପ୍‌ସାଇଡ଼ରେ ଦୋକାନ ଦେଇଛି ।"

ଚିପ୍‌ସାଇଡ଼ ଭଳି କଦର୍ଯ୍ୟ ଜାଗାରେ ଯେ ମନୁଷ୍ୟ କିପରି ରହିପାରେ, ଏ ବିଷୟ ଆଲୋଚନା କରି ଦୁଇଭଉଣୀ ହସି ହସି ଗଡ଼ିଗଲେ ।

ମିଃ ବିଙ୍ଗ୍‌ଲେ କହିଲେ, "ଡିପ୍‌ସାଇଡ୍‌ରେ ଯଦି ଆଉ କେହି ନଥାଇ କେନ୍‌ଙ୍କର ଖାଲିଗୁଡ଼ିଏ ଦାଦା ଥାଆନ୍ତେ, ତେବେ କଅଣ ତାଙ୍କ ସୁନ୍ଦରପଣ ଉଭେଇଯାନ୍ତା ?"

ମି. ଡାର୍‌ସି ମନ୍ତବ୍ୟ ଦେଲେ, "ସୁନ୍ଦରପଣ କମୁ ବା ନକମୁ, ଉପଯୁକ୍ତ ପାତ୍ର ମିଳିବାର ଆଶା ନିଶ୍ଚୟ କମିବ ।"

ବିଙ୍ଗ୍‌ଲେ ନୀରବ ରହିଲେ, କିନ୍ତୁ ତାଙ୍କର ଦୁଇ ଭଉଣୀ ମିଃ ଡାର୍‌ସିଙ୍କ ସହିତ ଏକମତ ହୋଇ ପୁଣି ହସିଲେ ।

କେନ୍‌ଙ୍କର ଦେହ ଭଲ ନଥିଲା । ଏଲିଜାବେଥ ସନ୍ଧ୍ୟା ପର୍ଯ୍ୟନ୍ତ ତାଙ୍କ ପାଖରେ ବସି ରହିଲେ । କେନ୍ ଶୋଇପଡ଼ିବାରୁ ସେ ତଳକୁ ଓହ୍ଲାଇ ଆସିଲେ । ସେତେବେଳକୁ ଅନ୍ୟମାନଙ୍କର ତାସ୍‌ଖେଳ ଚାଲିଥିଲା । ସେ ପାଖରେ ଛିଡ଼ାହୋଇ ଖେଳ ଦେଖିଲେ ।

ମିସ୍ ବିଙ୍ଗ୍‌ଲେ ମିଃ ଡାର୍‌ସିଙ୍କ ଭଉଣୀଙ୍କୁ ଦେଖିବାର ଇଚ୍ଛା ପ୍ରକାଶ କରି କହିଲେ, "ସେ ଯେପରି ସୁନ୍ଦରୀ ସେହିପରି ଗୁଣବତୀ । ତାଙ୍କର କି ଭଦ୍ର ବ୍ୟବହାର ! ତାଙ୍କର ପ୍ରତିଭା ଅଛି । କେହି ତାଙ୍କପରି ପିଆନୋ ବଜାଇ ପାରିବେ ନାହିଁ ।"

ମିଃ ବିଙ୍ଗ୍‌ଲେ କହିଲେ, "ଆଜିକାଲି ମହିଳାମାନଙ୍କର ପ୍ରତିଭା ଦେଖିଲେ ମୋର କୌତୂହଳ ହୁଏ । କେବଳ ଟେବୁଲ ଚିତ୍ର କରିବା, ପରଦାରେ ସୂଚୀକାମ କରିବା ହେଲା ସେମାନଙ୍କର ପ୍ରତିଭା ।"

ମିଃ ଡାରସି—ସେପରି ମହିଳାଙ୍କର ପ୍ରତିଭା ଅଛି ବୋଲି ମୁଁ କହିବି ନାହିଁ । ମୋର ଯେତେ ମହିଳାଙ୍କ ସଙ୍ଗେ ପରିଚୟ ଅଛି, ସେମାନଙ୍କ ଭିତରେ ପାଞ୍ଚ ଛଅ ଜଣଙ୍କର ପ୍ରତିଭା ଥିବ ।"

ମିସ୍ ବିଙ୍ଗ୍‌ଲେ ତାଙ୍କୁ ସମର୍ଥନ କରି କହିଲେ, "ସେ କଥା ଠିକ୍ । ଗୀତ, ବାଦ୍ୟ, ନୃତ୍ୟ, ଚିତ୍ରବିଦ୍ୟା, ଭାଷା ପ୍ରଭୃତିରେ ବିଶେଷ ପ୍ରବେଶ ନଥିଲେ କାହାର ପ୍ରତିଭା ଅଛି ବୋଲି କୁହାଯାଇ ନପାରେ । ତାହାଛଡ଼ା ସୁନ୍ଦର ରୂପ, ସୁନ୍ଦର ଚାଲି, ମଧୁର ସ୍ୱର, ଭଦ୍ର ବ୍ୟବହାର ଥିବା ମଧ୍ୟ ଦରକାର ।"

ମିଃ ଡାର୍‌ସି ଯୋଗକଲେ, "ଗମ୍ଭୀର ଅଧ୍ୟୟନ ଦ୍ୱାରା ମନକୁ ଶିକ୍ଷା ଦେଇଥିବା ମଧ୍ୟ ଦରକାର ।"

ମିସ୍ ଏଲିଜାବେଥ କହିଲେ, "ତୁମେ ଯେ ମୋଟେ ପାଞ୍ଚ ଛଅ ଜଣ ମହିଳାଙ୍କଠାରେ ପ୍ରତିଭା ଦେଖିଛ, ସେଥିରେ ମୁଁ ଆଉ ଆଶ୍ଚର୍ଯ୍ୟ ହେଉନାହିଁ ।"

ମିସେସ୍ ହ୍ରଷ୍ଟ ଓ ମିସ୍ ବିଙ୍ଗ୍‌ଲେ ଏଭଳି ଅନେକ ପ୍ରତିଭାଶାଳିନୀ ମହିଳା ଦେଖିଛନ୍ତି ବୋଲି କହିଲେ । ମିଃ ହ୍ରଷ୍ଟ ଏ କଥାବାର୍ତ୍ତାରେ ଯୋଗ ନଦେଇ କହିଲେ, "ଖେଳରେ ମନ ଦେଉନାହଁ ।" ଏଲିଜାବେଥ ପଛୁ ବାହାରିଗଲେ ।

ଏଲିଜାବେଥ୍ ଯିବା ପରେ ମିସ୍ ବିଙ୍ଗ୍‌ଲେ କହିଲେ, "ଯେଉଁମାନେ ନାରୀଜାତିର ନିନ୍ଦା ଗାଇ ପୁରୁଷମାନଙ୍କର ମନ ଆକର୍ଷଣ କରିବାକୁ ବସନ୍ତି, ସେମାନଙ୍କ ଭିତରୁ ଏଲିଜାବେଥ୍ ଜଣେ । ମୋ ମତରେ ଏପରି କରିବା ଏକ ନିତାନ୍ତ ହୀନ ଉପାୟ ।"

ଏହା ଶୁଣି ଡାର୍ସି ମନ୍ତବ୍ୟ ଦେଲେ, "ମହିଳାମାନେ ପୁରୁଷମାନଙ୍କୁ ଆକର୍ଷଣ କରିବାକୁ ଯେତେ କୌଶଳ ପ୍ରୟୋଗ କରନ୍ତି, ସେ ସବୁ ତ ଖା ଅଧିକେ ହୀନ ଉପାୟ । ଯେ କୌଣସି ପ୍ରକାର ପ୍ରତାରଣା ଘୃଣାର ବିଷୟ ।"

ମିସ୍ ବିଙ୍ଗ୍‌ଲେ ଆଉ କିଛି କହିଲେ ନାହିଁ ।

ପରଦିନ ସକାଳକୁ ଜେନ୍‌ଙ୍କ ଅବସ୍ଥା ଭଲ ଥିଲା । ଜଣେ ଚାକର ମିସେସ୍ ବେନେଟ୍‌ଙ୍କୁ ଆଣିବା ପାଇଁ ଚିଠି ନେଇ ଗଲା । ସେ ଆସି ଝିଅର ଅବସ୍ଥା ଦେଖିବେ ଓ କଣ କରାଯିବ ସ୍ଥିର କରିବେ । ଯଥା ସମୟରେ ମିସେସ୍ ବେନେଟ୍ କିଟି ଓ ଲିଡ଼ିଆକୁ ସେନି ପହଞ୍ଚିଲେ ।

ମିସେସ୍ ବେନେଟ୍ ଦେଖିଲେ, ଜେନ୍‌ର ଦେହ ସୁସ୍ଥ ହୋଇ ଆସିଲାଣି । ସେ ମନେ ମନେ ଟିକିଏ ଦୁଃଖିତ ହେଲେ । ଜେନ୍ କିପରି କିଛି ଦିନ ନେଦରଫିଲ୍ଡରେ ରହି ମି. ବିଙ୍ଗ୍‌ଲେଙ୍କୁ କରଗତ କରିବ, ତାହାହିଁ ତାଙ୍କର ଇଚ୍ଛା । ଝିଅ ପାଖରେ କିଛି ସମୟ ରହି ସେ ମିଃ ବିଙ୍ଗ୍‌ଲେ ଓ ତାଙ୍କ ଦୁଇ ଭଉଣୀଙ୍କ ସହିତ ଗଳ୍ପ ଆରମ୍ଭ କରିଦେଲେ । ମି. ବିଙ୍ଗ୍‌ଲେ ପଚାରିଲେ, "ଜେନ୍‌ଙ୍କ ଅବସ୍ଥା କିପରି ଦେଖିଲ ?"

"ଅବସ୍ଥା ସେତେ ଭଲ ନୁହେଁ । ବର୍ତ୍ତମାନ ତାକୁ ଏଠାରୁ ନେବା ଉଚିତ ହେବ ନାହିଁ । ଡାକ୍ତରଙ୍କ ମତ ମଧ୍ୟ ସେଇଆ । ତାକୁ ଆଉ କେତେ ଦିନ ଏଠାରେ ରଖିବାକୁ ହେବ ।"

ବଙ୍ଗ୍‌ଲେ କହିଲେ, "ଏଠାରୁ ନେବା କଥା ଚିନ୍ତାକର ନାହିଁ । ମୋ ଭଉଣୀ କେବେ ହେଲେ ତାଙ୍କୁ ଯିବାକୁ ଦେବେ ନାହିଁ ।"

ମିସ୍ ବଙ୍ଗ୍‌ଲେ ଭଦ୍ରତା ଦେଖାଇ କହିଲେ, "କେନର ଯତ୍ନ ନେବାରେ ଏଠାରେ ହେଳା ହେବ ନାହିଁ ।"

ମିସେସ୍ ବେନେଟ୍ ଧନ୍ୟବାଦ ଜଣାଇ କହିଲେ, "ତୁମମାନଙ୍କ ଭଳି ଗୁଡ଼ିଏ ବନ୍ଧୁ ନଥିଲେ ତାର ଅବସ୍ଥା ଯେ କଅଣ ହୋଇଥାନ୍ତା, ମୁଁ କହି ପାରୁ ନାହିଁ । ତାର ବଡ଼ କଷ୍ଟ ହେଉଅଛି; କିନ୍ତୁ ସେ ଧୈର୍ଯ୍ୟଧରି ପଡ଼ିଛି । ତାର ସ୍ୱଭାବ ଖୁବ ଭଲ । ମୁଁ ସେଥିପାଇଁ ମୋର ଅନ୍ୟ ଝିଅମାନଙ୍କୁ କହେ—ତୁମେ କେହି କେନ୍‌ପରି ଧୀରସ୍ଥିର ହୋଇପାରିଲ ନାହିଁ । ମିଃ ବଙ୍ଗ୍‌ଲେ, ତୁମର ଘର ବଡ଼ ସୁନ୍ଦର; ଗୁଡ଼ପୋଖରୀ ଦୃଶ୍ୟ କି ମନୋହର ! ତୁମେ ନିଶ୍ଚୟ ଏଠାରେ କିଛି ଦିନ ରହିବ ।"

"ମୋର ପ୍ରକୃତି ହେଉଛି, ଯାହା କରିବ ହଠାତ୍ ସଙ୍ଗେ ସଙ୍ଗେ କରିବ । ଯଦି ନେଦରଫିଲ୍‌ଡ ଛାଡ଼ିଯିବାକୁ ମନହେବ, ପାଞ୍ଚମିନିଟ ଭିତରେ ଚାଲିଯିବ । କିନ୍ତୁ ବର୍ତ୍ତମାନ ଏଠାରୁ ଚାଲିଯିବାର କୌଣସି ପ୍ରସ୍ତାବ ନାହିଁ ।"

ଏଲିଜାବେଥ ମାଆଙ୍କୁ ପଚାରିଲେ, "ଚାର୍ଲୋଟ ଲିଉକାସ୍ ଆମ ଘରକୁ ଆସି ନଥିଲେ ?"

"ହଁ, କାଲି ସେ ଓ ତାର ବାପା ଦୁହେଁଯାକ ଆସିଥିଲେ । ମିଃ ବଙ୍ଗ୍‌ଲେ, ସାର୍ ଉଇଲିଅମ ଏଡ଼େ ଭଲଲୋକ ବୋଲି ଜାଣି ନଥିଲି । ତାଙ୍କର ପୋଷାକ ପରି ଆଡ଼ମ୍ବରପୂର୍ଣ୍ଣ । କଥାବାର୍ତ୍ତାରେ ମଣିଷକୁ କିଣିନେବେ । କାହା ସାଙ୍ଗରେ କଥାବାର୍ତ୍ତା ନହେବେ ଏପରି ନୁହେଁ । ଯେଉଁମାନେ ଆପଣାକୁ ବଡ଼ ମନେକରି ପାଟି ଫିଟାନ୍ତି ନାହିଁ, ସେମାନଙ୍କୁ ମୋତେ ଭଲ ଲାଗେ ନାହିଁ ।" ଏହା କହି ମିସେସ୍ ବେନେଟ୍ ଡାର୍‌ସିଙ୍କ ଆଡ଼କୁ ଚାହିଁଲେ ।

ମାଆ ଆହୁରି କଣ କହିଯିବେ ବୋଲି ଏଲିଜାବେଥର ଆଶଙ୍କା ହେଲା । ଯାହାହେଉ କିଛି ସମୟ ନୀରବ ରହିବା ପରେ ମିସେସ୍ ବେନେଟ୍ ପୁଣି ଥରେ ଧନ୍ୟବାଦ ଦେଲେ । ମିଃ ବଙ୍ଗ୍‌ଲେ ଭଦ୍ରତା ଦେଖାଇ କିଛି କହିଲେ;

ତାଙ୍କ ଭଉଣୀ ମଧ୍ୟ ସ୍ୱଇଙ୍କ ଇଙ୍ଗିତରେ କିଛି କହିବାକୁ ବାଧ୍ୟ ହେଲେ । ମିସେସ୍ ବେନେଟ ଲଙ୍ଗବୋର୍ଣ୍ଣକୁ ଯିବାପାଇଁ ବାହାରିଗଲେ ।

ଏହା ପରେ ଏଲିଜାବେଥ ଜେନ୍ ପାଖକୁ ଗଲେ । ଏଣେ ମିସେସ୍ ହର୍ଷ୍ଟ, ମିସ୍ ବିଙ୍ଗ୍‌ଲେ ଓ ମିଃ ଡାର୍‌ସି ଏଲିଜାବେଥ ଓ ତାର କୁଟୁମ୍ବର ଅନ୍ୟମାନଙ୍କର ସମାଲୋଚନା କରିବାରେ ଲାଗିଲେ । କିନ୍ତୁ ମିସ୍ ବିଙ୍ଗ୍‌ଲେ ଏଲିଜାବେଥର ସୁନ୍ଦର ଆଖି ବିଷୟରେ ଯେତେ ଉପହାସ କଲେ ସୁଦ୍ଧା ମିଃ ଡାର୍‌ସି ସେ ସମାଲୋଚନାରେ ଯୋଗ ଦେଉ ନଥିଲେ ।

## ନେଦରଫିଲ୍‌ଡର ହାଲ୍‌ଚାଲ

ଏହି ଘଟଣାର ପରଦିନ ଜେନ୍ ଖୁବ୍ ସୁସ୍ଥ ବୋଧ କରିବାରୁ ଏଲିଜାବେଥ୍‌ଙ୍କ ହାତ ଧରି ତଳ ଘରକୁ ଆସିଲେ । ତାକୁ ଦେଖିଲା କ୍ଷଣି ମିସ୍ ବିଙ୍ଗ୍‌ଲେ ଓ ମିସେସ୍ ହର୍ଷ୍ଟ ଆନନ୍ଦ ପ୍ରକାଶ କଲେ । କିନ୍ତୁ ମି. ଡାର୍‌ସି ଓ ମି. ହର୍ଷ୍ଟ ଘରଭିତରକୁ ଆସିଲା ମାତ୍ରେ ସେମାନେ ଜେନ୍‌ଙ୍କ କଥା ଭୁଲିଗଲା ପରି ବୋଧହେଲା । ମିଃ ଡାର୍‌ସି ଜେନ୍‌କୁ ଶୁଭେଚ୍ଛା ଜଣାଇଲେ । ମି. ହର୍ଷ୍ଟ ମଧ୍ୟ ଜେନ୍‌ଙ୍କର ସ୍ୱାସ୍ଥ୍ୟରେ ଉନ୍ନତି ନିମନ୍ତେ ଆନନ୍ଦ ପ୍ରକାଶ କଲେ । କିନ୍ତୁ ମିଃ ବିଙ୍ଗ୍‌ଲେ ଜେନ୍ ବିଷୟରେ ସମସ୍ତଙ୍କଠାରୁ ବେଶି ଆଗ୍ରହୀ ଥିଲେ । ଜେନ୍‌ଙ୍କ ଦେହକୁ ଥଣ୍ଡା ନଲାଗିବ ବୋଲି ସେ ନିଜେ ଉଦ୍ୟୋଗରେ ନିଆଁ କରିଦେଲେ ଓ ତାଙ୍କ ପାଖରେ ବସି ଗଳ୍ପ କରିବାକୁ ଲାଗିଲେ । ଏଲିଜାବେଥ ଦୂରରେ ବସି କଅଣ ଗୋଟାଏ ସିଲେଇ କରୁ କରୁ ମିଃ ବିଙ୍ଗ୍‌ଲେଙ୍କ ଆଡ଼କୁ ଚାହୁଁଥିଲେ ।

ମିଃ ହର୍ଷ୍ଟଙ୍କର ମନ ଥିଲା, ଖାଦ୍ୟ ଖିଆ ପରେ ତାସ ଖେଳ ହେଉ, କିନ୍ତୁ ଅନ୍ୟ କେହି ଖେଳିବାକୁ ନବାହାରିବାରୁ ସେଠି ଗୋଟିଏ ସୋଫା ଉପରେ ଶୋଇଲେ । ମିଃ ଡାର୍‌ସି ଓ ମିସ୍ ବିଙ୍ଗ୍‌ଲେ ଖଣ୍ଡେ ଲେଖାଏଁ ବହି ଧରି ଗୋଟିଏ ଗୋଟିଏ ସୋଫା ଉପରେ ପଡ଼ିଗଲେ । ମିଃ ବିଙ୍ଗଲେ ଓ ମିସ୍ ଜେନ୍ ଗଳ୍ପ କରୁଥାନ୍ତି; ମିସେସ୍ ହର୍ଷ୍ଟ ମଝିରେ ମଝିରେ ପଦେ ଅଧେ କହୁଥାନ୍ତି ।

ମିସ୍ ବିଙ୍ଗ୍‌ଲେଙ୍କ ଦୃଷ୍ଟି ନିଜ ବହି ଉପରେ ନ ଥାଏ; ଥାଏ ମିଃ ଡାର୍‌ସିଙ୍କ ଉପରେ । କିନ୍ତୁ ସେତେ ଚେଷ୍ଟା କଲେ ମଧ୍ୟ ମିଃ ଡାର୍‌ସି ତାଙ୍କ ସଙ୍ଗେ କଥାବାର୍ତ୍ତା ହେଉ ନଥାନ୍ତି, କେବଳ ମିସ୍ ବିଙ୍ଗ୍‌ଲେଙ୍କର ଗୋଟାଏ ଗୋଟାଏ ପ୍ରଶ୍ନର ଉତ୍ତର ଦେଉଥାନ୍ତି । ଶେଷରେ ମିସ୍ ବିଙ୍ଗ୍‌ଲେ କହିଲେ, "ଓଃ, ପଢିବାରେ କି ଆନନ୍ଦ ! ମୋ ନିଜର ଘର ହେଲେ ଆଉ ଗୋଟିଏ ଲାଇବ୍ରେରୀ କରିବି ।"

କେହି କିଛି କହିଲେ ନାହିଁ । ଅଗତ୍ୟା ମିସ୍ ବିଙ୍ଗ୍‌ଲେ ବହି ଖଣ୍ଡିକ ଫିଙ୍ଗି ଦେଇ ଉଠିପଡ଼ିଲେ ଓ ଘର ଭିତରେ ଏପାଖ ସେପାଖ ବୁଲିବାକୁ ଲାଗିଲେ । ମିଃ ଡ଼ାର୍‌ସି ତାଙ୍କ ଆଡକୁ ନଚାହିଁ ବହିକୁ ଚାହିଁଥାନ୍ତି । ଶେଷରେ ମିସ୍ ବିଙ୍ଗ୍‌ଲେ ଏଲିଜାବେଥ୍‌ଙ୍କୁ କହିଲେ, "ଆସ, ମୋ ସାଥିରେ ଟିକିଏ ବୁଲିବ । କେତେବେଳୁ ବସି ବସି ଖରାପ ଲାଗୁଛି ।"

ଏଲିଜାବେଥ ଉଠି ଗଲେ । ମିଃ ଡାରସି ବହି ବନ୍ଦ କରି ସେ ଦୁହିଁଙ୍କୁ ଚାହିଁଲେ । ମିସ୍ ବିଙ୍ଗଲେ କହିଲେ, "ମିଃ ଡାର୍‌ସି, ତୁମେ ଆସୁନ ।" ଡାର୍‌ସି ମନା କରିଦେଇ କହିଲେ, "ଘର ଭିତରେ ତୁମେ ଦୁଇଜଣ ଏପରି ବୁଲିବାର ଦୁଇଟା ଉଦ୍ଦେଶ୍ୟ ହୋଇପାରେ । ପ୍ରଥମତଃ ତୁମ ଭିତରେ କିଛି ଗୁପ୍ତ କଥାବାର୍ତ୍ତା ଥିବ; ତାହାହେଲେ ମୋର ତୁମ ସାଥିରେ ବୁଲିବା ଅନ୍ୟାୟ ହେବ । ଅନ୍ୟ ଉଦ୍ଦେଶ୍ୟ ହୋଇପାରେ, ତୁମର ସୁନ୍ଦର ରୂପ ଦେଖାଇବା । ମୁଁ ଏଇଠାରେ ରହି ତାହା ବେଶ୍ ଉପଭୋଗ କରିପାରିବି ।"

ମିସ୍ ବିଙ୍ଗ୍‌ଲେ କହିଲେ, "ଏପରି ଅଭଦ୍ର କଥା ମୁଁ କେବେ ଶୁଣି ନ ଥିଲି । ଏଥିପାଇଁ ମିଃ ଡାର୍‌ସିଙ୍କୁ କି ଦଣ୍ଡ ଦିଆଯାଇପାରେ ?"

ଏଲିଜାବେଥ କହିଲେ, "ସେଥିରେ କିଛି କଷ୍ଟ ନାହିଁ । ତାଙ୍କୁ ବିରକ୍ତ କର; ହସରେ ଉଡାଇଦିଅ ।"

ମିସ୍ ବିଙ୍ଗଲେ—"ତାଙ୍କୁ ହସରେ ଉଡାଇଦେବ, ଏଭଳି ସାହସ କାହାର ଅଛି ?"

ମିଃ ଡାର୍‌ସି କହିଲେ, "ମିସ୍ ବିଙ୍ଗ୍‌ଲେ, ଅତି ଜ୍ଞାନୀ ଲୋକକୁ ମଧ୍ୟ ଉପହାସର ପାତ୍ର କରାଯାଇପାରେ—ଅବଶ୍ୟ ଯାହା ହସିବା ଜୀବନର ଏକ ମାତ୍ର ଉଦ୍ଦେଶ୍ୟ ହୋଇଥାଏ ।"

ଏଲିଜାବେଥ—କେବଳ ହସିବା ମୋର ଜୀବନର ଉଦ୍ଦେଶ୍ୟ ନୁହେଁ । ମୂର୍ଖତା ଓ ନିର୍ବୋଧତା ଦେଖିଲେ ମୋତେ ହସମାଡ଼େ ସତ; କିନ୍ତୁ ତୁମଠାରେ ସେ ଦୁଇଟିର ଅଭାବ ।

ମିଃ ଡ଼ାର୍ସି—ଜ୍ଞାନୀ ଲୋକ ଯେଉଁ ଦୁର୍ବଳତା ହେତୁ ଉପହାସର ପାତ୍ର ହୁଅନ୍ତି, ମୁଁ ତାହାଠାରୁ ଦୂରରେ ରହିବାକୁ ଚେଷ୍ଟା କରେ ।

ମିସ୍ ବିଙ୍ଗଲେ—ଯଥା ଗର୍ବ, ଅଭିମାନ ।

ମିଃ ଡ଼ାର୍ସି—ଅଭିମାନ ଅବଶ୍ୟ ଗୋଟାଏ ଦୁର୍ବଳତା, କିନ୍ତୁ ଗର୍ବ ଗୋଟାଏ ଦୁର୍ବଳତା ନୁହେଁ । ଯେ କୌଣସି ବୁଦ୍ଧିମାନ୍ ଲୋକ ଗର୍ବକୁ ଦମନ କରିପାରେ ।

ମିସ୍ ବିଙ୍ଗଲେ—ଏଲିଜାବେଥ, ମିଃ ଡାର୍ସିଙ୍କ ବିଷୟରେ ତୁମର ମତ କଅଣ ?

ମିସ୍ ଏଲିଜାବେଥ—ମୋର ମତ ହେଉଛି, ମିଃ ଡାର୍ସିଙ୍କଠାରେ କୌଣସି ଦୋଷ ବା ଦୁର୍ବଳତା ନାହିଁ ।

ମିଃ ଡ଼ାର୍ସି—ନା, ନା, ମୋର ଅନେକ ଦୋଷ ଅଛି । ମୁଁ କାହାରିକୁ ସନ୍ତୁଷ୍ଟ କରିପାରେ ନାହିଁ । ଅନ୍ୟ ଲୋକଙ୍କର ଦୋଷ ଭୁଲିଯିବା ମୋ ପକ୍ଷରେ ଅସମ୍ଭବ । ଥରେ ମୁଁ କାହାରି ବିଷୟରେ ମନ୍ଦ ଧାରଣା ପୋଷଣ କଲେ ତାହା ବଦଳାଇ ପାରେ ନାହିଁ ।

ମିସ୍ ଏଲିଜାବେଥ—ଅସହିଷ୍ଣୁତା ଗୋଟାଏ ଦୋଷ । ତୁମର ଏ ଦୋଷ ପାଇଁ ମୁଁ ତୁମକୁ ଉପହାସ କରି ନପାରେ ।

ମିଃ ଡାରସି—ପ୍ରତ୍ୟେକ ଲୋକର ଚରିତ୍ରରେ ଗୋଟାଏ ଗୋଟାଏ ଦୋଷ ଥାଏ । ଯେତେ ଶିକ୍ଷା ପାଇଲେ ସୁଦ୍ଧା ତାହା ଦୂର ହୁଏ ନାହିଁ ।

ମିସ୍ ବିଙ୍ଗ୍ଲେ—ତୁମର ଦୋଷ ହେଉଛି ସମସ୍ତଙ୍କୁ ଘୃଣା କରିବା ।

ହସି ହସି ମିଃ ଡାରସି କହିଲେ, "ଆଉ ତୁମର ଦୋଷ ହେଉଛି, ଅନ୍ୟକୁ ଭୁଲ ବୁଝିବା ।

ମିସ୍ ବିଙ୍ଗ୍ଲେ—ଟିକିଏ ଗୀତ ବାଦ୍ୟ ହେଉ । ମିଃ ହର୍ଷ୍ଟଙ୍କୁ ଉଠାଅ ।

ପିଆନୋ ବାଦ୍ୟ ବାଜି ଉଠିଲା । ମିଃ ଡ଼ାରସି ଭାବିଲେ, ମିସ୍ ଏଲିଜା-ବେଥଙ୍କ ଏତେ ପ୍ରଶ୍ରୟ ଦେବା ଭଲ ହେଲା ନାହିଁ ।

ଏହାର ପରଦିନ ଏଲିଜାବେଥ ଗାଡ଼ି ପଠାଇବା ପାଇଁ ଘରକୁ ଖବର ଦେଲେ । ମିସେସ୍ ବେନେଟ୍‌ଙ୍କର ଇଚ୍ଛା ଥିଲା ଝିଅମାନେ ନେଦରଫିଲ୍ଡ଼ରେ ଅନ୍ତତଃ ସପ୍ତାହେ ଖଣ୍ଡେ ରହିଲେ କିଛି ସୁବିଧା ହୋଇପାରିବ । ସେ ମନେ ମନେ ଅସନ୍ତୁଷ୍ଟ ହୋଇ ଖବର ପଠାଇଲେ—ବୁଧବାର ପୂର୍ବରୁ ଗାଡ଼ି ପଠାଇବାର ସୁବିଧା ନାହିଁ । କିନ୍ତୁ ନେଦରଫିଲ୍ଡ଼ରେ ଆଉ ଅଯଥା ରହିବା ଏଲିଜାବେଥଙ୍କର ଇଚ୍ଛା ନଥିଲା । ସେ ଜେନ୍‌ଙ୍କୁ କହିଲେ, "ମିଃ ବିଙ୍ଗ୍‌ଲେଙ୍କୁ ତାଙ୍କ ଗାଡ଼ି ଦେବା ପାଇଁ କହ ।"

ସମସ୍ତଙ୍କ ଅନୁରୋଧରେ ଜେନ୍ ଆଉ ଦିନେ ରହିବା ସ୍ଥିର ହେଲା । ତତ୍ପରଦିନ ଜେନ୍ ଓ ଏଲିଜାବେଥ ଲଙ୍ଗବୋର୍ଣ୍ଣକୁ ବାହାରିଲେ । ଏଥି ମଧ୍ୟରେ ମିଃ ଡାର୍‌ସି ଭାବିଲେ—ମିସ୍ ଏଲିଜାବେଥଙ୍କ ପ୍ରତି ତାଙ୍କର ଏତେ ଦୂର ଆକର୍ଷଣ ସୁନ୍ଦର ହେଲା ନାହିଁ । ଏଲିଜାବେଥଙ୍କର ଧାରଣା ହେଲା—ମିସ୍ ବିଙ୍ଗ୍‌ଲେଙ୍କର ତାଙ୍କ ପ୍ରତି ବ୍ୟବହାର ନିତାନ୍ତ ରୁକ୍ଷ । ମିଃ ଡାର୍‌ସି ସ୍ଥିରକଲେ —ଏଣିକି ଏପରି ବ୍ୟବହାର ଦେଖାଇବାକୁ ହେବ ଯେପରି ଏଲିଜାବେଥ ମନେ ନକରିବେ ଯେ ମୁଁ ତାଙ୍କୁ ଭଲପାଏ ।

ଏଲିଜାବେଥ୍ ଓ ଜେନ୍ ବିଦାୟ ନେଇ ଗଲାବେଳକୁ ମିସ୍ ବିଙ୍ଗ୍‌ଲେ ସେମାନଙ୍କ ପ୍ରତି ଆଶାତୀତ ଭଦ୍ର ବ୍ୟବହାର ଦେଖାଇଲେ; ଜେନ୍‌କୁ ଚୁମ୍ବନ ଦେଲେ ଓ ଏଲିଜାବେଥଙ୍କ ସହିତ କରମର୍ଦ୍ଦନ କଲେ ।

କିନ୍ତୁ ଘରେ ପହଞ୍ଚିବାରୁ ମାଆ ଝିଅମାନଙ୍କୁ ବିଶେଷ ଆଦର ଦେଖାଇଲେ ନାହିଁ । କିନ୍ତୁ ମିଃ ବେନେଟ୍ ଖୁବ୍ ଆନନ୍ଦିତ ହେଲେ । କେତେ ଦିନ ହେଲା ସେ ଝିଅମାନଙ୍କର ଅନୁପସ୍ଥିତି ତୀବ୍ର ଭାବରେ ଅନୁଭବ କରୁଥିଲେ ।

## ମି. କଲିନ୍‌ସ

ପରଦିନ ସକାଳେ ମିଃ ବେନେଟ ସ୍ତ୍ରୀଙ୍କୁ କହିଲେ, "ଆଜି ଜଣେ ଅତିଥି ଆସିବାର ଅଛି । ସନ୍ଧ୍ୟାବେଳକୁ ଭଲ ଖିଆପିଆର ବନ୍ଦୋବସ୍ତ କରିବ ।"

ମିସେସ୍ ବେନେଟ୍‌ଙ୍କ ମନରେ ମିଃ ବିଙ୍ଗ୍‌ଲେଙ୍କ ଚିନ୍ତା ଛଡ଼ା ଆଉ କିଛି ନଥିଲା । ସେ କହିଲେ, "ନିଶ୍ଚୟ ମି. ବିଙ୍ଗ୍‌ଲେ ଆସୁଥିବେ । ଜେନ୍ ଏକଥା ଆଗରୁ କହିଲା ନାହିଁ । ବଡ଼ ଆନନ୍ଦର କଥା, ମି. ବିଙ୍ଗ୍‌ଲେ ଆସୁଛନ୍ତି ।"

ମିଃ ବେନେଟ କହିଲେ, "ନାଇଁହେ, ମିଃ ବିଙ୍ଗ୍‌ଲେ ଆସୁନାହାନ୍ତି । ଯେ ଆସୁଛନ୍ତି ତାଙ୍କର ନାମ ମି· କଲିନ୍‌ସ । ସେ ମୋର ଖୁଡ଼ୁତା ପୁଅ ଭାଇ । ମୋ ଅନ୍ତେ ସେ ଇଚ୍ଛା କଲେ ତୁମକୁ ଏ ଘରୁ ବାହାର କରି ଦେଇ ପାରନ୍ତି ।"

"ତେବେ ସେ ଲୋକଟା କଥା କହ ନାହିଁ । ତୁମ ଘର, ତୁମ ସମ୍ପତ୍ତି ଝିଅମାନେ ଭୋଗିବେ ନାହିଁ, ଆଉ ସେ ଗୋଟାଏ କିଏ ଆସି ଭୋଗିବ ?"

ଜେନ୍ ଓ ଏଲିଜାବେଥ ଉତ୍ତରାଧିକାର ଆଇନ୍ ବୁଝାଇ ମାଆଙ୍କୁ କହିଲେ, "ବାପା ତାଙ୍କ ବାପାଙ୍କଠାରୁ ସମ୍ପତ୍ତି ପାଇଥିଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ପାଇଥାନ୍ତା; କିନ୍ତୁ ତାଙ୍କର ପୁଅ ନଥିବାରୁ ତାଙ୍କର ନିକଟସମ୍ପର୍କୀୟ ଦାଦାଙ୍କ ପୁଅ କଲିନ୍‌ସ ସବୁ ପାଇବେ । ଆଇନ ଅନୁସାରେ ଝିଅମାନେ ବାପ ସମ୍ପତ୍ତିରେ ଉତ୍ତରାଧିକାରୀ ହୋଇ ପାରିବେ ନାହିଁ ।"

ମି· ବେନେଟ୍‌ଙ୍କ ସମ୍ପତ୍ତି ତାଙ୍କ ଝିଅମାନେ ପାଇବେ ନାହିଁ; ଦୂର ସମ୍ପର୍କର କେଉଁ ଭାଇ ପାଇବ—ଏଭଳି ଗୋଟାଏ ଅନ୍ୟାୟ କଥା ମିସେସ୍ ବେନେଟ୍ କଳ୍ପନା କରି ପାରିଲେ ନାହିଁ । ତାଙ୍କର ସବୁ ରାଗ ଯାଇ ପଡ଼ିଲା ମି· କଲିନ୍‌ସଙ୍କ ଉପରେ ।

ମି· ବେନେଟ୍ କହିଲେ, "ଶୁଣ, ରାଗ କରିବାରେ ଲାଭ ନାହିଁ । ନ୍ୟାୟ ହେଉ ବା ଅନ୍ୟାୟ ହେଉ, ଆଇନ ତା ବାଟରେ ଚାଲିବ । ମି· କଲିନ୍‌ସ ମୋ ସମ୍ପତ୍ତିରେ ଉତ୍ତରାଧିକାରୀ ହେବେ । ତାଙ୍କୁ ଖରାପ ବୋଲି ଭାବୁଛ କାହିଁକି ? ଏଇ, ତାଙ୍କ ଚିଠି ପଢ଼ୁଛି, ଶୁଣ ।"

ହାନସଫୋର୍ଡ, କେଣ୍ଟ
୧୫ ତାରିଖ, ଅକ୍ଟୋବର

ମହାଶୟ,

ଆପଣଙ୍କ ସହିତ ମୋର ସ୍ୱର୍ଗୀୟ ପିତାଙ୍କର ଯେଉଁ ମନାନ୍ତର ହୋଇଥିଲା, ସେଥିନିମନ୍ତେ ମୁଁ ସର୍ବଦା ଅଶାନ୍ତ ଉଦ୍‌ବେଗ କରୁଅଛି । ପିତାଙ୍କ ସ୍ୱର୍ଗପ୍ରାପ୍ତି ପରେ ସେ ବିବାଦର ସମାଧାନ କରିବାକୁ ମୁଁ ବ୍ୟାକୁଳ ହୋଇଅଛି । ପ୍ରଥମେ ପିତାଙ୍କ ସ୍ମୃତି ପ୍ରତି ସମ୍ମାନ ଦେଖାଇ ତାଙ୍କ ବିରୋଧୀଙ୍କ ସହିତ ମିତ୍ରତା ସ୍ଥାପନ କରିବି ନାହିଁ ବୋଲି ଭାବିଥିଲି । କିନ୍ତୁ ଧର୍ମଯାଜକ ପଦରେ ନିଯୁକ୍ତ ହେବା ପରେ ମୋର ସେ ମତ ବଦଳିଯାଇଛି । ଲେଡି କାଥେରିନ୍‌ଙ୍କ ଅନୁଗ୍ରହରୁ ମୁଁ ହାନ୍‌ସଫୋର୍ଡ଼ର ପାର୍ସନ ପଦ ପାଇଛି । ତେଣୁ ମୋର ଅଭାବ ନାହିଁ । ପାର୍ସନ ଭାବରେ ମୋର କର୍ତ୍ତବ୍ୟ ହେଉଛି, ସବୁ ପରିବାରରେ ଶାନ୍ତି ପ୍ରତିଷ୍ଠା କରିବା । ତେଣୁ ମୁଁ ଆପଣଙ୍କ ସହିତ ବନ୍ଧୁଭାବ ରକ୍ଷା କରିବାକୁ ଇଚ୍ଛୁକ । ଦୈବାତ୍ ମୁଁ ଆପଣଙ୍କ ଲଙ୍ଗବୋର୍ଣ୍ଣ ସମ୍ପତ୍ତିର ଉତ୍ତରାଧିକାରୀ । ମୁଁ ଆପଣଙ୍କ ଝିଅମାନଙ୍କର କୌଣସି କ୍ଷତିର କାରଣ ହେଲେ ନିତାନ୍ତ ଦୁଃଖିତ ହେବି । ଦୈବ ଉପରେ କାହାରି ଅଧିକାର ନାହିଁ । ତେଣୁ ମୋତେ କ୍ଷମା ଦେବେ । ଏ ବିଷୟରେ ଆମେ ପରସ୍ପର ଆଲୋଚନା କରି ଗୋଟାଏ ସିଦ୍ଧାନ୍ତ କରିପାରିବା । ୧୮ ତାରିଖ ସୋମବାର ଦିନ ୪ଟା ଘଟିକାରେ ଆପଣଙ୍କ ଗୃହରେ ଉପସ୍ଥିତ ହେବି । ଆପଣଙ୍କର କିଛି ଆପତ୍ତି ନଥିଲେ ସପ୍ତାହେ ପର୍ଯ୍ୟନ୍ତ ରହିବାକୁ ଇଚ୍ଛା କରୁଅଛି ।

ପରିଶେଷରେ ମୋର ସସମ୍ମାନ ଶୁଭେଚ୍ଛା ଗ୍ରହଣ କରିବେ ଓ ଆପଣଙ୍କ କନ୍ୟାମାନଙ୍କୁ ମୋର ଶୁଭେଚ୍ଛା ଜଣାଇଦେବେ ।

ମି· ବେନେଟ୍ ଚିଠି ପଢ଼ିସାରି କହିଲେ, "ଆଜି ଚାରିଟା ବେଳେ ସେ ଆସିବେ । ଲୋକଟି ଖୁବ୍ ଭଦ୍ର ମନେହେଉଛନ୍ତି ।"

ମିସେସ୍ ବେନେଟ୍ କହିଲେ, "ଝିଅମାନଙ୍କ ବିଷୟରେ ସେ ଯାହା ଲେଖିଅଛନ୍ତି ତାହା ଠିକ୍ । ସେ ଯେବେ ସେମାନଙ୍କ ପାଇଁ କିଛି ବ୍ୟବସ୍ଥା କରିବେ, ସେଥିରେ ଆମର ଆପତ୍ତି ନାହିଁ—ବରଂ ଆନନ୍ଦର କଥା ।"

କିନ୍ତୁ ଏଲିଜାବେଥ କହିଲେ, "ଲୋକଟି ଅଭିଜ୍ଞ ହୋଇଥିବେ । ମୁଁ ତାଙ୍କର ଉଦ୍ଦେଶ୍ୟ ବୁଝି ପାରୁନାହିଁ । ସେ ଏ ସମ୍ପତ୍ତିର ଉତ୍ତରାଧିକାରୀ, ଏକଥା ଉପରେ ଖୁବ୍ ଜୋର୍ ଦେଇଛନ୍ତି; ଅବଶ୍ୟ ଏଥିରେ ତାଙ୍କର ଦୋଷ ନାହିଁ । ବାପା, ତୁମେ କଅଣ ମନେକରୁଛ ?

"ଲୋକଟି ଭଲ ବୋଲି ମୋର ମନେ ହେଉ ନାହିଁ । ହେଉ, ଆସିଲେ ଦେଖାଯିବ ।"

ଠିକ୍ ଚାରଟାବେଳେ ମି· କଲିନ୍ସ ପହଞ୍ଚିଗଲେ । ତାଙ୍କର ଉପଯୁକ୍ତ ଅଭ୍ୟର୍ଥନା ହେଲା । ତାଙ୍କର ବୟସ ୨୫ ବର୍ଷ ହେବ । ସେ ମିସେସ୍ ବେନେଟ୍‌ଙ୍କୁ ଓ ଝିଅମାନଙ୍କୁ ପ୍ରଶଂସା କରିବାରେ ଲାଗିଲେ । ଝିଅମାନେ କିପରି ଭଲ ପାତ୍ର ପାଇବେ ସେ ବିଷୟରେ ଉତ୍ସାହ ପ୍ରକାଶ କଲେ ।

ମିସେସ୍ ବେନେଟ କହିଲେ, "ତୁମେ ଠିକ୍ କହୁଛ । ସେମାନଙ୍କ ପ୍ରତି ତୁମର ଖୁବ୍ ଦୟା । ତୁମେ ଦୟା ନ କଲେ ସେମାନେ ପଥର ଭିକାରି ହେବେ । ଏ ଉତ୍ତରାଧିକାର ଆଇନ ବଡ଼ ଖରାପ । କିନ୍ତୁ ସେଥିପାଇଁ ତୁମର କି ଦୋଷ ? ଦୈବ ଘଟନା ଉପରେ କାହାର ବଳ ଅଛି ?"

ମି· କଲିନ୍ସ କେବଳ ଯେ ଝିଅମାନଙ୍କ ରୂପଗୁଣର ପ୍ରଶଂସା କଲେ ତାହା ନୁହେଁ, ଘରର ଆସବାବ ଓ ସାଜସଜ୍ଜାର ପ୍ରଶଂସା ମଧ୍ୟ କମ୍ ନ ଥିଲା । ଆଉ କେହି ଏଭଳି ପ୍ରଶଂସା କରିଥିଲେ ମିସେସ୍ ବେନେଟ୍ ଖୁବ୍ ଖୁସି ହୋଇଥାନ୍ତେ । କିନ୍ତୁ ମି: କଲିନ୍ସ ଏସବୁର ଭାବୀ ଉତ୍ତରାଧିକାରୀ ହୋଇ ଥିବାରୁ ତାଙ୍କ ମୁଖରୁ ପ୍ରଶଂସା ତାଙ୍କୁ ଭଲ ଲାଗିଲା ନାହିଁ ।

ଖାଇଲାବେଳେ ମି· ବେନେଟ୍ କିଛି କଥାବାର୍ତ୍ତା କରୁ ନଥିଲେ, କେବଳ ଥରେ ଲେଡି କାଥେରିନ୍‌ଙ୍କ ବିଷୟ ପଚାରିଥିଲେ । ମି: କଲିନ୍ସ ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା କରି ତାଙ୍କୁ ସେ କିପରି ଆଦର କରନ୍ତି ତାହା ବର୍ଣ୍ଣନା କରିଗଲେ ।

ମିସେସ୍ ବେନେଟ୍ ମଧ୍ୟ ଲେଡି କାଥେରିନଙ୍କ ବିଷୟରେ କିଛି ଜାଣିବାକୁ ଚାହିଁଲେ । ମି· କଲିନ୍ସ କହିଲେ, "ଲେଡ଼ି କାଥେରିନ ରହନ୍ତି ରୋଜିଙ୍ଗସ୍ ପାର୍କରେ । ତାଙ୍କର ସମ୍ପତ୍ତିର ସୀମା ନାହିଁ । କିନ୍ତୁ ତାଙ୍କର ସ୍ୱାସ୍ଥ୍ୟ ଖରାପ ବୋଲି ବେଶୀ ପଢ଼ାଶୁଣା କରିନାହାନ୍ତି । ସେହି ହେତୁରୁ ସେ ଲଣ୍ଡନରେ

ଧନୀକ ସମାଜରେ ବେଶୀ ଦିନ ଚଳି ନାହାନ୍ତି । ତାଙ୍କର ଗୋଟିଏ ମାତ୍ର ଝିଅ ।"

ମି· ବେନେଟ୍ ସବୁ ଶୁଣିଲେ । ତାଙ୍କର ଧାରଣା ହେଲା କଲିନ୍ସ ଗୋଟିଏ ଅଦ୍ଭୁତ ଲୋକ ।

# ମି· ଉଇକ୍‌ହାମ

ମିଃ କଲିନ୍ସ ଭଦ୍ର ସମାଜରେ ଚଳୁଥିଲେ; ଉଚ୍ଚ ଶିକ୍ଷା ପାଇଥିଲେ । କିନ୍ତୁ ତାଙ୍କର ବୁଦ୍ଧିବୃତ୍ତି ଟିକିଏ ଊଣା । ତାଙ୍କର ବାପା ଥିଲେ ମୂର୍ଖ ଓ କୃପଣ । ତାଙ୍କର ପ୍ରଭାବ କଲିନ୍ସଙ୍କ ଉପରେ ପଡ଼ିଥିଲା । ହାନସଫୋର୍ଡର ପାର୍ଦ୍ରିକ ପଦ ପାଇବା ପରେ ସେ ଲେଡ଼ି କାଥେରିନେଙ୍କୁ ଅତ୍ୟନ୍ତ ସମ୍ମାନ ଦେଖାଇବାକୁ ବାଧ୍ୟ ହେଲେ । ଫଳତଃ ତାଙ୍କ ଚରିତ୍ରରେ ଗର୍ବ ଓ ଦାସମନୋବୃତ୍ତିର ଅଦ୍ଭୁତ ମିଳନ ଘଟିଥିଲା ।

ମି· କଲିନ୍ସଙ୍କର ଗୋଟିଏ ଘର ଥିଲା; ଭଲ ଆୟ ମଧ୍ୟ ଥିଲା । ତାଙ୍କର ଇଚ୍ଛା, ମି· ବେନେଟ୍‌ଙ୍କ ଝିଅମାନଙ୍କ ମଧ୍ୟରୁ ଗୋଟିକୁ ବିଭା ହେବେ ।

ଲଙ୍ଗବୋର୍ଣ୍ଣରେ କିଛି ସମୟ କଟାଇବା ପରେ ସେ ମନେ ମନେ ଜେନ୍‌ଙ୍କୁ ନିଜର ଭାବୀ ପତ୍ନୀ ରୂପେ ସ୍ଥିର କରିପକାଇଲେ । ଭାଗ୍ୟକୁ ସେ ବଡ଼ ଝିଅ, ତେଣୁ ଆପତ୍ତିର କାରଣ ନ ଥିଲା । ପରଦିନ ସକାଳେ ମି· କଲିନ୍ସ ମିସେସ୍ ବେନେଟ୍‌ଙ୍କ ପାଖରେ ପ୍ରସ୍ତାବ ପକାଇଲେ । କିନ୍ତୁ ମିସେସ୍ ବେନେଟ୍ କହିଲେ, "ଜେନ୍ ଅନ୍ୟ ଜଣଙ୍କୁ ବିବାହ କରିବା ପ୍ରସ୍ତାବ ହୋଇସାରିଛି; ନିକଟରେ ତାର ନିର୍ବନ୍ଧ ହେବ । ଅନ୍ୟ କୌଣସି ଝିଅ ପକ୍ଷରେ ସେପରି କିଛି ଅସୁବିଧା ନାହିଁ ।" ମିଃ କଲିନ୍ସ ମନେ ମନେ ଏଲିଜାବେଥକୁ ସ୍ଥିର କଲେ ।

ମିସେସ୍ ବେନେଟ୍ ଦୁଇଟି ଝିଅଙ୍କୁ ବିଭା ଦେଇପାରିବେ ଭାବି ଆନନ୍ଦିତ ହେଲେ । ଦିନକ ଆଗରୁ ଯାହା ଉପରେ ତାଙ୍କର କ୍ରୋଧ ହେଉଥିଲା ଆଜି ତାଙ୍କୁ ସେ ଆପ୍ୟାୟିତ କରିବାକୁ ଲାଗିଲେ ।

ସେଦିନ ସକାଳେ ମିଃ କାର୍ଲାଇଲ୍ସ ଗୃହିଣୀ ଝିଅଙ୍କୁ ସଙ୍ଗରେ ନେଇ ମେରିଟନକୁ ଗଲେ । ସେଠାରେ ତାଙ୍କ ମାଉସୀ ମିସେସ୍ ଫିଲିପ୍ସଙ୍କୁ ଦେଖିବା ସଙ୍ଗେ ସଙ୍ଗେ କେତେକ ସାମରିକ ଅଫିସରଙ୍କୁ ଦେଖିବା ସେମାନଙ୍କର ଉଦ୍ଦେଶ୍ୟ ଥିଲା । ଝିଅମାନଙ୍କର ଦୃଷ୍ଟି ବିଶେଷ ଭାବରେ ଅଫିସରମାନଙ୍କ ଚକ୍‌ଚକିଆ ପୋଷାକ ଉପରେ ଥିଲା । ସମସ୍ତ ସମୟରେ କୌଣସି ଦୋକାନର ସୁନ୍ଦର କପଡ଼ା ଉପରେ ସେମାନଙ୍କର ନଜର ରହୁଥିଲା ।

ଜଣେ ଅପରିଚିତ ଯୁବକଙ୍କୁ ଦେଖି ସେମାନେ ବିସ୍ମିତ ହୋଇଗଲେ । ସେ ଯେଉଁ ଅଫିସରଙ୍କ ସହିତ ଯାଉଥିଲେ ତାଙ୍କୁ ଲିଡିଆ ପୂର୍ବରୁ ଚିହ୍ନିଥିଲା । ଏହି ଅପରିଚିତ ଯୁବକଙ୍କର ଚେହେରା ଦେଖି ସମସ୍ତେ ବିସ୍ମିତ ହେବାର କଥା । ଝିଅମାନଙ୍କ ସହିତ ସେ ବୁଢ଼ୀଙ୍କର ଫୁଟ୍‌ପାଥ୍‌ରେ ଭେଟ ହୋଇଗଲା । ଲିଡ଼ିଆର ପରିଚିତ ଅଫିସର ଜଣକ ଏହି ଯୁବକଙ୍କର ପରିଚୟ ଦେଇ କହିଲେ—ଏ ହେଉଛନ୍ତି ମିଃ ଉଇକ୍‌ହାମ । ଜଣେ ଅଫିସର ଭାବରେ ରେଜିମେଣ୍ଟରେ ଯୋଗ ଦେବାପାଇଁ ଲଣ୍ଡନରୁ ଆସିଥିଛନ୍ତି । ଏହିପରି କଥାବାର୍ତ୍ତା ଚାଲିଥିବା ସମୟରେ ମି. ବିଙ୍ଗ୍‌ଲେ ଓ ମିଃ ଡାର୍ସି ଘୋଡ଼ାରେ ବସି ସେଠାରେ ଉପସ୍ଥିତ ହେଲେ । ମି. ବିଙ୍ଗ୍‌ଲେ ଜେନଙ୍କୁ କହିଲେ, "ତୁମ ଦେହ କିପରି ଅଛି ବୁଝିବାକୁ ମୁଁ ଲଙ୍ଗବୋର୍ଣ୍ଣ ଯାଉଥିଲି ।" ମିଃ ଡାର୍ସି ଏଲିଜାବେଥଙ୍କୁ ନଗ୍ରହି ଅନ୍ୟ ଆଡ଼େ ମୁହଁ ବୁଲାଇନେଲାବେଳକୁ ତାଙ୍କ ଆଖି ପଡ଼ିଗଲା ମି. ଉଇକ୍‌ହାମଙ୍କ ଉପରେ । ବୁଢ଼ୀଙ୍କର ମୁହଁର ରଙ୍ଗ ବଦଳିଗଲା । ଏଲିଜାବେଥ ଏହାର କାରଣ ବୁଝିପାରିଲେ ନାହିଁ । ଦୁହେଁ କାହାକୁ କିଛି ନକହି ବିଦାୟ ନେଇଗଲେ ।

ଗୃହିଣୀଙ୍କ ସେମାନଙ୍କ ମାଉସୀ ମିସେସ୍ ଫିଲିପ୍ସଙ୍କ ଘରକୁ ଗଲେ । ତାଙ୍କଠାରୁ ମିଃ ଉଇକହାମଙ୍କ ବିଷୟରେ କିଛି ଅଧିକା ଖବର ମିଳିଲା ନାହିଁ । ତେବେ ସେ ସ୍ୱାମୀଙ୍କଦ୍ୱାରା ମିଃ ଉଇକହାମଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କରାଇବେ ବୋଲି ଆଶ୍ୱାସନା ଦେଲେ । ସେଠାରେ ତାଙ୍କର ସବିଶେଷ ପରିଚୟ ମିଳିବା ଆଶାରେ ସମସ୍ତେ ଅପେକ୍ଷା କରି ରହିଲେ ।

# ମି. ଡାରସି ଓ ମି. ଉଇକହାମ୍

ପରଦିନ ସନ୍ଧ୍ୟାରେ ମିଃ କଲିନ୍ସ ପାଞ୍ଚଭଉଣୀଙ୍କୁ ଗାଡ଼ିରେ ନେଇ ମେରିଟନରେ ପହଞ୍ଚିଲେ । ମିଃ ଉଇକହାମ ଆସିବେ ବୋଲି ଝିଅମାନଙ୍କ ମନରେ ଆନନ୍ଦ । ଏଥିମଧ୍ୟରେ ମି· କଲିନ୍ସ ବୈଠକଖାନାର ଯାକସଜ୍ଜା ଉପରେ ଥରେ ଦୃଷ୍ଟି ପକାଇଗଲେ । କହିଲେ—"ଏ ଘରଟିର ସାଜସଜ୍ଜା ଲେଡ଼ି କାଥେରନଙ୍କ ରୋଜିଙ୍ଗସରେ ଥିବା ଘରର ସାଜସଜ୍ଜାଠାରୁ କୌଣସିମତେ ଊଣା ନୁହେଁ ।" ମିସେସ୍ ଫିଲପସଙ୍କର ରୋଜିଙ୍ଗସର ଘର ବିଷୟରେ କିଛି ଧାରଣା ନଥିଲା । ମିଃ କଲିନ୍ସ ତାର ଏକ ସଂକ୍ଷିପ୍ତ ବର୍ଣ୍ଣନା ଦେଇ କହିଲେ, "ତାଙ୍କ ବୈଠକଖାନାର ଆଡମ୍ବର କଅଣ କହିବି ! ଉହ୍ମେଇ ଉପରେ ଯେଉଁ ବାଜସଟା ଅଛି ଏକା ତାର ଦାମ୍ ଆଠଶହ ପାଉଣ୍ଡ !" ଏହା ଶୁଣି ମିସେସ୍ ଫିଲପସ ମନେ ମନେ ଗର୍ବ ଅନୁଭବ କଲେ ।

ମିଃ ଉଇକହାମ୍ ପହଞ୍ଚିବାରୁ ଝିଅମାନେ ତାଙ୍କୁ ଏକଦୃଷ୍ଟିରେ ଚାହିଁ ରହିଲେ । ସେ ଆସି ଏଲିଜାବେଥଙ୍କ ପାଖରେ ବସିଲେ । ସମସ୍ତେ ବସି ତାସ ଖେଳ ଆରମ୍ଭ କଲେ । ଉଇକହାମ ଏଲିଜାବେଥଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଖେଳୁଥାନ୍ତି । ଏଲିଜାବେଥ ମିଃ ଡାରସିଙ୍କ ନାମ ମଧ୍ୟ ଉଚାରଣ କରୁନଥାନ୍ତି । କିନ୍ତୁ କଥାଟା ବାହାରିଲା ମିଃ ଉଇକହାମଙ୍କ ଆଡୁ ।

ସେ ପଚାରିଲେ, "ମିଃ ଡାରସି କେତେ ଦିନ ହେଲା ନେଦରଫିଲ୍ଡରେ ରହିଛନ୍ତି ?"

ଏଲିଜାବେଥ ଉତ୍ତର କଲେ, "ପ୍ରାୟ ମାସେ ହେବ । ଶୁଣାଯାଏ, ଡରବିସାୟାରରେ ତାଙ୍କର ପ୍ରଚୁର ସମ୍ପତ୍ତି ଅଛି ।"

ମିଃ ଉଇକହାମ—ହଁ, ସେଥିରୁ ବର୍ଷକୁ ଦଶହଜାର ପାଉଣ୍ଡ ମିଳେ । ମୁଁ ତାଙ୍କ ବିଷୟରେ ଯେତେ କଥା ଜାଣେ ଆଉ କେହି ଜାଣି ନଥିବେ । ମୁଁ ପିଲାଟିଦିନୁ ତାଙ୍କ ପରିବାର ସହିତ ମିଳାମିଶା ଅଛି ।"

ଏଲିଜାବେଥ ବିସ୍ମୟରେ ମିଃ ଉଇକହାମଙ୍କୁ ଚାହିଁଲେ ।

ମିଃ ଓ୍ୱିଲକହାମ—କାଲି ମିଃ ଡାର୍‌ସିଙ୍କ ସଙ୍ଗେ ମୋର ଦେଖାବେଳେ ଯାହା ଘଟିଲା, ସେଥିରେ ତୁମର ଆଶ୍ଚର୍ଯ୍ୟ ହେବାର କଥା । ତୁମେ ମି. ଡ଼ାର୍‌ସିଙ୍କୁ ଭଲରୂପେ ଜାଣିଛ ?

ଏଲିଜାବେଥ—ଏକପ୍ରକାର ଜାଣେ । ମୁଁ ତାଙ୍କ ସହିତ ଗୋଟିଏ ଘରେ ସ୍ୱଳ୍ପଦିନ ରହିଥିଲି । ମୋତେ ତାଙ୍କ ବ୍ୟବହାର ଭଲ ଲାଗିଲା ନାହିଁ ।

ମିଃ ଓ୍ୱିଲକହାମ—ସେ କଅଣ ନେଦରଫିଲ୍‌ଡରେ ଆହୁରି କେତେ ଦିନ ରହିବେ ?

ଏଲିଜାବେଥ—କେତେ ଦିନ ରହିବେ କହିପାରିବି ନାହିଁ । କିନ୍ତୁ ସେ ଚାଲିଯିବାର କିଛି ସୂଚନା ମିଳି ନାହିଁ । ସେ ଏଠାରେ ରହିବାଦ୍ୱାରା ତୁମର କାର୍ଯ୍ୟନିର୍ଘଣ୍ଟରେ କିଛି ବାଧା ଘଟିବ କି ?

ମିଃ ଓ୍ୱିଲକହାମ—କାହିଁକି ହେବ ? ଡ଼ାର୍‌ସି ମୋତେ ଏଠାରୁ ତଡ଼ିଦେଇ ପାରିବେ ନାହିଁ । ସେ ଯଦି ମୋତେ ଦେଖାଦେବାକୁ ନ ଚାହାନ୍ତି, ତେବେ ସେ ଚାଲିଯିବେ । ଆମ ଦୁହିଁଙ୍କ ଭିତରେ ସଦ୍ଭାବ ନାହିଁ । ତାଙ୍କ ବାପା ଜଣେ ଖୁବ୍ ଭଲ ଲୋକ ଥିଲେ । କିନ୍ତୁ ମିଃ ଡାର୍‌ସିଙ୍କର ମୋ ପ୍ରତି ବ୍ୟବହାର ନିତାନ୍ତ ଖରାପ ।

ଏଲିଜାବେଥ ଏଭଳି ବିଷୟରେ କିଛି ନ କହିବା ଉଚିତ ମନେ କଲେ । କିଛି ସମୟ ପରେ ମିଃ ଓ୍ୱିଲକହାମ କହିଲେ, "ସୈନ୍ୟ ବିଭାଗରେ ପ୍ରବେଶ କରିବା ମୋର ଇଚ୍ଛା ନଥିଲା । ମୁଁ ପାଦ୍ରୀ ହେବାର ସ୍ଥିର ହୋଇଥିଲା; କିନ୍ତୁ ଏଇ ମିଃ ଡାର୍‌ସି ମୋର ସେ ବାଟ ବନ୍ଦକରିଦେଲେ । ଡ଼ାର୍‌ସିଙ୍କ ବାପା ମୋତେ ତାଙ୍କ ସମ୍ପତ୍ତିରୁ କିଛି ଦେଇ ପାଦ୍ରୀ ପଦରେ ନିଯୁକ୍ତ କରିବାକୁ ସ୍ଥିର କରିଥିଲେ । ମୁଁ ଭାବିଥିଲି ତାଙ୍କ ଚରମପତ୍ରରେ ସେ ବ୍ୟବସ୍ଥା କରିଥିବେ । କିନ୍ତୁ ଦେଖାଗଲା, ସେ ପଦଟି ଅନ୍ୟ ଜଣକୁ ଦିଆଯାଇଅଛି ।"

ଏଲିଜାବେଥ— ଏ ବଡ଼ ଆଶ୍ଚର୍ଯ୍ୟ କଥା ! ତାଙ୍କ ଚରମପତ୍ର ଅନ୍ୟଥା କରାଯାଇ ନପାରେ ।

ମି. ଓ୍ୱିଲକହାମ—ମିଃ ଡ଼ାର୍‌ସି ବାପାଙ୍କ ଇଚ୍ଛାକୁ ପାଦରେ ଦଳି ଚାହିଁ କଲେ । ସେ କହିଲେ ଯେ ମୁଁ ଅପବ୍ୟୟୀ । ଯାହାହେଉ ମୁଁ ସେ

ସମ୍ପତ୍ତିରୁ ବଞ୍ଚିତ ହେଲ; ଅନ୍ୟାୟ ଭାବରେ ବଞ୍ଚିତ ହେଲ । ପ୍ରକୃତ କଥା ପ୍ରକାଶ କରିବାରେ ମୋର କୁଣ୍ଠା ନଥାଏ । ମୁଁ ତାଙ୍କ ସଫା ସଫା ତାଙ୍କ କାର୍ଯ୍ୟର ନିନ୍ଦା କରି କହିଲି । ଯାହାହେଉ, ଆମ ଦୁହିଁଙ୍କର ପ୍ରକୃତି ଭିନ୍ନ; ସେ ମୋତେ ଘୃଣା କରନ୍ତି ।

ଏଲିଜାବେଥ—ଏ ବଡ ଦୁଃଖର ବିଷୟ ! ତାଙ୍କୁ ସର୍ବସାଧାରଣରେ ଅପମାନିତ କରିବା ଉଚିତ ।

ମିଃ ଉଇକହାମ—ଦିନେ ସେ ଅପମାନ ପାଇବେ । କିନ୍ତୁ ମୁଁ ତାଙ୍କ ବାପାଙ୍କ ସ୍ମୃତି ଭୁଲି ପାରିବି ନାହିଁ । ତେଣୁ ମୁଁ ନିଜେ ତାଙ୍କୁ ଅପମାନ ଦେବି ନାହିଁ ।

ଏଲିଜାବେଥ—ମିଃ ଡାର୍‌ସି ମୋତେ ଭଲଲୋକ ବୋଲି ବୋଧ ହେଉ ନଥିଲେ; କିନ୍ତୁ ସେ ଏତେ ଖରାପ ଲୋକ ବୋଲି ଭାବି ନଥିଲି । ଲୋକସାଧାରଣ ତାଙ୍କୁ ଗଣନ୍ତି; କିନ୍ତୁ ସେ ଏପରି ଘୃଣ୍ୟ ଅନ୍ୟାୟ କାର୍ଯ୍ୟ କରିପାରନ୍ତି ବୋଲି ମୋର ଧାରଣା ନଥିଲି । ଦିନେ ସେ କହୁଥିଲେ— 'କାହାକୁ କ୍ଷମା ଦେବା ମୋ ଜାତକରେ ନାହିଁ ।' ପିତାଙ୍କର ଜଣେ ପରମ ବନ୍ଧୁ, ନିଜର ଜଣେ ବାଲ୍ୟସଙ୍ଗୀ ପ୍ରତି ତାଙ୍କର ଏ ବ୍ୟବହାର ନିତାନ୍ତ ହୀନ ।

ମିଃ ଉଇକହାମ—ଆମେ ଦୁହେଁ ଏକ ସ୍ଥାନରେ ଜନ୍ମ ଓ ମିଳିମିଶି ଏକାଠି କଟାଇଥିଲୁ । ମୋର ବାପା ଓକିଲ ଥିଲେ; ବେଶ୍ ରୋଜଗାର ଥିଲି । କିନ୍ତୁ ଏଇ ଡାର୍‌ସିଙ୍କ ବାପାଙ୍କ ଅନୁରୋଧରେ ସେ ଓକିଲାତି ଛାଡ଼ିଦେଇ ତାଙ୍କ ପାଖରେ ରହୁଥିଲେ । ପିତାଙ୍କ ମୃତ୍ୟୁ ପୂର୍ବରୁ ତାଙ୍କୁ ନିର୍ଭର ପ୍ରତିଶ୍ରୁତି ମିଳିଥିଲି ସେ ମୋର କୌଣସି ଅଭାବ ରହିବ ନାହିଁ ।

ଏଲିଜାବେଥ—ବଡ଼ ଆଶ୍ଚର୍ଯ୍ୟର କଥା ! ସେ ଏତେ ଗର୍ବ କରନ୍ତି; ତେବେ ଏଭଳି ଅନ୍ୟାୟ କଲେ କିପରି ?

ମିଃ ଉଇକହାମ—ତାଙ୍କର ଗର୍ବ ତାଙ୍କୁ ରକ୍ଷା କରିଛି । ଏହି ଗର୍ବ ଥିବାରୁ ସେ ମୁକ୍ତହସ୍ତରେ ବ୍ୟୟ କରନ୍ତି; ଉଦାର ଭାବରେ ଦାନ କରନ୍ତି; ଦରିଦ୍ରମାନଙ୍କୁ ଦାନ ଦିଅନ୍ତି । ପୂର୍ବପୁରୁଷର ଗର୍ବ ସେ ରଖିଛନ୍ତି । କିନ୍ତୁ—।

ଏଲିଜାବେଥ—ମିସ୍ ଡାର୍‌ସି କିପରି ଲୋକ ?

ମିଃ ଉଇଲହାମ—ଡାର୍ସି ପରିବାରର କାହାରିକୁ ନିନ୍ଦା କରିବା ମୋ ପକ୍ଷରେ ଦୁଃଖଜନକ । ମିସ୍ ଡାର୍ସି ଖୁବ ଭଲ ଗର୍ବୀ । ପିଲାଦିନେ ସେ ମୋତେ ଖୁବ ଭଲ ପାଉଥିଲେ । ମୁଁ ମଧ୍ୟ ତାଙ୍କୁ ଖୁସି କରିବାରେ ଚେଷ୍ଟିତ ଥିଲି । କିନ୍ତୁ ଏବେ ଆମ ଦୁହିଁଙ୍କ ଭିତରେ କିଛି ସମ୍ବନ୍ଧ ନାହିଁ । ତାଙ୍କ ବିଷୟରେ ଏତିକି ଜାଣିପାରେ, ସେ ସୁନ୍ଦରୀ, ପନ୍ଦର ଷୋଳବର୍ଷର ଯୁବତୀ ଓ ଖୁବ ବୁଦ୍ଧିମତୀ ।

ତାପରେ ଖେଳ ଶେଷରେ ମିଃ କଲିନ୍ସ, ମିଃ ଉଇଲହାମ ଓ ଏଲିଜାବେଥଙ୍କ ପାଖକୁ ଆସିଲେ । ମିଃ କଲିନ୍ସ ଖେଳରେ ବରାବର ହାରୁଥିଲେ, କିନ୍ତୁ ସେଥିପାଇଁ ତାଙ୍କର ଦୁଃଖ ନଥିଲା । ମିଃ ଉଇଲହାମ ଚୁପ୍‌ଚାପ୍ କରି ଏଲିଜାବେଥଙ୍କୁ ପଚାରିଲେ, "ମିଃ କଲିନ୍ସଙ୍କର ଲେଡ଼ି କାଥେରିନଙ୍କ ପରିବାର ସହିତ ସମ୍ବନ୍ଧ ବେଶି ଦିନର କି ?" ଏଲିଜାବେଥ ସବୁକଥା ବୁଝାଇଦେଲେ ।

ମି. ଉଇଲହାମ—ଲେଡ଼ି କାଥେରିନ ହେଉଛନ୍ତି ମି. ଡାର୍ସିଙ୍କର ମାଉସୀ । ଲେଡ଼ି କାଥେରିନଙ୍କ ଝିଅ ବିପୁଳ ସମ୍ପତ୍ତିର ଅଧିକାରିଣୀ ହେବ । ଶୁଣାଯାଏ, ମିସ୍ ଡିବର୍ଗଙ୍କ ସହିତ ଡାର୍ସିଙ୍କର ବିବାହ ହେଲେ ଦୁଇ ସମ୍ପତ୍ତି ଏକାଠି ହେବ ।

ଏଲିଜାବେଥ ମିସ୍ ବିଙ୍ଗ୍‌ଲେଙ୍କ ଦୁରାଶା ବିଷୟ ଚିନ୍ତା କରି ମନେ ମନେ ହସିଲେ । ଡାର୍ସିଙ୍କର ବିବାହ ସ୍ଥିର ହୋଇ ଯାଇଥିବା ସ୍ଥଳେ ମିସ୍ ବିଙ୍ଗ୍‌ଲେଙ୍କ ଆଶାର କି ମୂଲ୍ୟ ଅଛି ?

ସେ କହିଲେ, "ମି. କଲିନ୍ସ ଲେଡ଼ି କାଥେରିନ୍ ଓ ତାଙ୍କ ଝିଅଙ୍କର ଖୁବ୍ ପ୍ରଶଂସା କରନ୍ତି । କିନ୍ତୁ ତାଙ୍କର କେତେକ କଥାରୁ ମୋର ସନ୍ଦେହ ହୁଏ ସେ ଲେଡ଼ି କାଥେରିନ୍ ଉଦ୍ଧତ ପ୍ରକୃତିର ଲୋକ ।"

ମି· ଉଇଲହାମ—ସେ ଯେ ଉଦ୍ଧତ ଏଥିରେ ସନ୍ଦେହ ନାହିଁ । ସେ ନିଜକୁ ଅତି ବଡ଼ ମନେକରନ୍ତି । ତାଙ୍କର ବ୍ୟବହାର ଅତି ରୁକ୍ଷ ।

ଖେଳ ସରିଲା । ଏଲିଜାବେଥଙ୍କ ମନରେ ଉଇଲହାମଙ୍କ ଛଡ଼ା ଆଉ କୌଣସି ଚିନ୍ତା ପ୍ରବେଶ କରି ପାରିଲା ନାହିଁ । ସେ ଉଇଲହାମଙ୍କ ବିଷୟ ଚିନ୍ତା କରି କରି ଘରେ ପହଞ୍ଚିଲେ ।

# ମିଃ କଲିନ୍ସ ଓ ମିଃ ଉଇକହାମ୍

ଅସନ୍ତା ମଙ୍ଗଳବାର ଦିନ ନେଦରଫିଲ୍ଡରେ ଗୋଟାଏ ବଲ୍ ନୃତ୍ୟ ହେବାର ସ୍ଥିର ହୋଇଥାଏ । ମିଃ ବେନେଟ୍‌ଙ୍କ ସ୍ତ୍ରୀ ଓ ଝିଅମାନେ ଏଥିପାଇଁ ଆନନ୍ଦରେ ବିଭୋର । ମିଃ ବିଙ୍ଗଲେ ଓ ତାଙ୍କ ଦୁଇଭଉଣୀ ଆସି ସେମାନଙ୍କୁ ନିମନ୍ତ୍ରଣ କରି ଯାଇଥାନ୍ତି । ଜେନ୍‌ର ଆଶା, ସେ ମିଃ ବିଙ୍ଗଲେ ଓ ତାଙ୍କ ଭଉଣୀ ଦୁହିଁଙ୍କ ସହିତ କିଛି ସମୟ ଆନନ୍ଦରେ କଟାଇପାରିବ । ଏଲିଜାବେଥର ଆଶା, ସେ ମିଃ ଉଇକହାମଙ୍କ ସହିତ ଅନେକ ବେଳଯାଏ ନାଚିବେ । ଆନନ୍ଦର ଅତିଶଯ୍ୟରେ ସେ ମିଃ କଲିନ୍‌ସଙ୍କୁ ପଚାରିଲେ, "ତୁମେ ଏହି ବଲ୍ ନୃତ୍ୟରେ ଯୋଗଦେବାକୁ ଯାଉଛ ତ ?"

ମିଃ କଲିନ୍ସ—ସିଥିରେ ଆପତ୍ତିର କାରଣ ଆଦୌ ନାହିଁ । ତୁମମାନଙ୍କ ସହିତ ନାଚିବାରେ ମୋର ଆନନ୍ଦ । ଏଲିଜାବେଥ, କିନ୍ତୁ ପ୍ରଥମ ଦୁଇଥର ତୁମେ ମୋ ସଙ୍ଗରେ ନାଚିବ । ଏ ମୋର ଅନୁରୋଧ ।"

ଏଲିଜାବେଥ ବଡ଼ ଅଡୁଆରେ ପଡ଼ିଲେ । ସେ ମିଃ ଉଇକହାମଙ୍କ ସଙ୍ଗରେ ନାଚିବେ ବୋଲି କଳ୍ପନା କରିଥିଲେ; କିନ୍ତୁ ଏବେ ତାଙ୍କୁ ମିଃ କଲିନ୍‌ସଙ୍କ ସଙ୍ଗେ ନାଚିବାକୁ ହେବ । ମନ କଥା ମନରେ ରଖି ସେ ମିଃ କଲିନସଙ୍କୁ ସ୍ୱୀକୃତି ଜଣାଇଲେ । କିନ୍ତୁ ଏହାଦ୍ୱାରା ସେ ଆଦୌ ସୁଖ ଅନୁଭବ କରିପାରି ନଥିଲେ । ତାଙ୍କ ମାଆ ତାଙ୍କୁ ସୂଚନା ଦେଲେ ଯେ କଲିନ୍‌ସଙ୍କ ସହିତ ତାଙ୍କର ବିବାହ ହୋଇପାରିଲେ ସେ ସୁଖୀ ହେବେ ।

ଏଲିଜାବେଥ ନୃତ୍ୟଶାଳାରେ ମିଃ ଉଇକହାମଙ୍କୁ ସାଥୀରୂପେ ପାଇବା ଆଶାରେ ଖୁବ୍ ଆଡମ୍ବରରେ ସଜ୍ଜିତ ହୋଇ ଯାଇଥିଲେ; କିନ୍ତୁ ସେଠାରେ ତାଙ୍କର ଦେଖା ମିଳିଲା ନାହିଁ । ମିଃ ବିଙ୍ଗଲେ ଜାଣିଶୁଣି ତାଙ୍କୁ ନିମନ୍ତ୍ରଣ କରିନାହାନ୍ତି ବୋଲି ତାଙ୍କର ସନ୍ଦେହ ହେଲା । କିନ୍ତୁ ଜଣେ ବନ୍ଧୁଙ୍କଠାରୁ ଖବର ମିଳିଲା, ମିଃ ଉଇକହାମ କାର୍ଯ୍ୟ ଉପଲକ୍ଷରେ ଲଣ୍ଡନ ଯାଇଛନ୍ତି । କିନ୍ତୁ ତାଙ୍କ କହିବା ଭଙ୍ଗୀରୁ ଜଣାଗଲା, କାର୍ଯ୍ୟଟା ଛଳନା ମାତ୍ର, ପ୍ରକୃତ ଉଦ୍ଦେଶ୍ୟ ହେଲା ସେ ଏଠାରୁ ଭଦ୍ରଲୋକଙ୍କୁ ଏଡ଼ିବାପାଇଁ ଦୂରକୁ ଯାଇଛନ୍ତି ।

ଉଇକହାମଙ୍କ ଅନୁପସ୍ଥିତି ପାଇଁ ଯେ ଡାର୍‌ସି ଦାୟୀ—ଏ ଧାରଣା ଏଲିଜାବେଥଙ୍କ ମନରେ ବଦ୍ଧମୂଳ ହେଲା । ମିଃ ଡ଼ାର୍‌ସି ଆସି ତାଙ୍କ ସହିତ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ; କିନ୍ତୁ ସେ ତାଙ୍କ ସହିତ ଆଗ୍ରହର ସହିତ କଥା କହିଲେ ନାହିଁ, ବରଂ ଦୂରେଇ ରହିବାକୁ ଚେଷ୍ଟା କଲେ । ସେ କଲିନ୍‌ସଙ୍କ ସାଥିରେ ଦୁଇଥର ନାଚିଲେ, କିନ୍ତୁ ଏଥିରେ ଆଦୌ ତୃପ୍ତି ପାଇଲେ ନାହିଁ । ଏହା ପରେ ସେ ଜଣେ ଅଫିସରଙ୍କ ସହିତ ନାଚିଲେ । ମି. ଉଇକହାମଙ୍କ ବିଷୟରେ କଥାବାର୍ତ୍ତା ହେଲା । ଶ୍ରୀମତୀ ଲିଉକାସଙ୍କ ସହିତ ଏଲିଜାବେଥ କଥାବାର୍ତ୍ତା ହେଉଛନ୍ତି, ଏହି ସମୟରେ ହଠାତ୍ ମି. ଡ଼ାର୍‌ସି ଆସି ଏଲିଜାବେଥଙ୍କୁ ତାଙ୍କ ସଙ୍ଗେ ନାଚିବାପାଇଁ ଡାକିଲେ । ଅବଶ୍ୟ ସେ ନିତାନ୍ତ ବିସ୍ମିତ ହେଲେ; କିନ୍ତୁ ନାଚିବାକୁ ସ୍ୱୀକାର କଲେ । ସେ ଦୁହେଁ ନାଚୁଥିବା ବେଳେ ଅନେକେ ଏଲିଜାବେଥଙ୍କୁ ଈର୍ଷାପୂର୍ଣ୍ଣ ଦୃଷ୍ଟିରେ ଚାହୁଁଥିଲେ । ନୃତ୍ୟ ପରେ ଡ଼ାର୍‌ସି ପଚାରିଲେ, "ଏଲିଜାବେଥ, ତୁମେମାନେ କଅଣ ମେରିଟନକୁ ବରାବର ବୁଲି ବୁଲି ଯାଅ ?" ଏଲିଜାବେଥ ଉତ୍ତର କଲେ, "ହଁ, ଆମେ ଅନେକ ସମୟରେ ବୁଲି ଯାଉଁ । ଯେଉଁଦିନ ତୁମେ ଆମମାନଙ୍କୁ ସେଠାରେ ଦେଖିଥିଲ, ସେଦିନ ଆମେ ଜଣେ ନୂଆ ବନ୍ଧୁଙ୍କୁ ପାଇଥିଲୁ ।"

ମିଃ ଡାର୍‌ସି ଏଲିଜାବେଥର କଥାର ଉଦ୍ଦେଶ୍ୟ ବୁଝି ପାରିଲେ । ସେ ଗମ୍ଭୀର ହୋଇ କହିଲେ, "ମିଃ ଉଇକହାମଙ୍କର ଢଙ୍ଗଢାଙ୍ଗ ଯେପରି ସେଥିରେ ସେ ଅଳ୍ପକାଳରେ ଯେକୌଣସି ଲୋକର ବନ୍ଧୁ ହୋଇ ପାରନ୍ତି; କିନ୍ତୁ ତାଙ୍କର ବନ୍ଧୁତା ବେଶି ଦିନ ରହେନାହିଁ ।"

ଏଲିଜାବେଥ—ସେ ଦୁର୍ଭାଗ୍ୟବଶତଃ ତୁମର ବନ୍ଧୁତା ହରାଇଛନ୍ତି । ହୁଏତ ସେଥିପାଇଁ ସେ ସାରା ଜୀବନ ଦୁଃଖ ଭୋଗିବେ, କାରଣ ତୁମେତ ହଠାତ୍ କହିଥିଲ ଯେ ଜୀବନରେ କାହାରିକୁ କ୍ଷମା ଦେବା ତୁମର ପ୍ରକୃତି ନୁହେ ।

ମିଃ ଡାରସି—ହଁ, ସେ କଥା ସତ ।

ଏଲିଜାବେଥ—କିନ୍ତୁ ଯଦି କେହି ନିଜର ମତ ପରିବର୍ତ୍ତନ କରିବାକୁ ଆଦୌ ପ୍ରସ୍ତୁତ ନଥାଏ, ସେ ଅତି ସାବଧାନରେ ପ୍ରଥମେ ନିର୍ଭୁଲ ମତ ଗଠନ କରିବା ଦରକାର ।

ମିଃ ଡାର୍ସି—ଏହା କହିବାର ଉଦ୍ଦେଶ୍ୟ କଣ ଜାଣିପାରେ କି ?

ଏଲିଜାବେଥ—ମୁଁ ତୁମର ଚରିତ୍ର ଜାଣିବାକୁ ଚେଷ୍ଟା କରୁଛି । ତୁମ ବିଷୟରେ ମୁଁ ନାନାକଥା ଶୁଣିବାକୁ ପାଉଛି । କେଉଁଟା ଠିକ୍ କେଉଁଟା ଭୁଲ ବୁଝିବା ମୋର ଇଚ୍ଛା ।

ଏହା କହି ସେ ହସି ଉଠିଲା । ମି. ଡାର୍ସି ଗମ୍ଭୀର ହୋଇ କହିଲେ, "ମୁଁ ଜାଣେ, ମୋ ବିଷୟରେ ତୁମେ ନାନାକଥା ଶୁଣିବାକୁ ପାଉଥିବ । ତେଣୁ ତୁମେ ଖୁବ୍ ସବୁ ଚିନ୍ତା ଗୋଟାଏ ସିଦ୍ଧାନ୍ତରେ ପହଞ୍ଚିବା ଉଚିତ । ହଠାତ୍ ଗୋଟାଏ କିଛି କରିପକାଇଲେ ହୁଏତ ତୁମର ମଙ୍ଗଳ ହେବ ନାହିଁ, କି ମୋର ମଙ୍ଗଳ ହେବ ନାହିଁ ।"

ନୃତ୍ୟ ଶେଷ ହେଲା । ଡାର୍ସି ମନେ ମନେ ସ୍ଥିର କଲେ— ଏଲିଜାବେଥଙ୍କର କିଛି ଦୋଷ ନାହିଁ । ଏଇ ଉଇକହାମ ସବୁ ଅନିଷ୍ଟର ମୂଳ ।

ଏଲିଜାବେଥଙ୍କ ମନ ବଡ଼ ଖରାପ । କେବଳ ଜେନ୍ ଓ ମିଃ ବିଙ୍ଗ୍‌ଲେଙ୍କର ପରସ୍ପର ପ୍ରତି ସ୍ନେହ ଶ୍ରଦ୍ଧା ଦେଖି ସେ ଟିକିଏ ଆନନ୍ଦ ପାଉଥିଲା । କିନ୍ତୁ ତାର ମାଆ ସେ ଦୁହିଁଙ୍କର ବିବାହ ନିଶ୍ଚିତ ବୋଲି ଧରି ନେଇଥିଲେ ଓ ଏହି ବିବାହ କିପରି ତାଙ୍କ ପରିବାର ପକ୍ଷରେ ମଙ୍ଗଳକର ହେବ ତାହା ଲେଡି ଲିଉକାସ୍‌ଙ୍କୁ କହୁଥିଲେ । ଏଲିଜାବେଥ ମାଆଙ୍କର ଏଭଳି କଥାକୁ ବାରଣ କରିପାରିଲେ ନାହିଁ । ଲିଡ଼ିଆ ଓ କିଟି କେତେଜଣ ସାମରିକ ଅଫିସରଙ୍କ ସହିତ ଗଳ୍ପରେ ମାତିଥିଲେ । ମେରି କିଛି ସମୟ ପିଆନୋ ବଜାଇଲା; କିନ୍ତୁ କେହି ତାହା ଶୁଣିବାକୁ ପ୍ରସ୍ତୁତ ନଥିଲେ ।

ଏଲିଜାବେଥ ବୁଝିପାରିଲେ, ମି. ଡାର୍ସି ପଦାରେ ପ୍ରକାଶ କରୁନଥିଲେ ସୁଦ୍ଧା ମନେ ମନେ ତାଙ୍କୁ ଘୃଣା କରୁଥିଲେ । ମିଃ ବିଙ୍ଗ୍‌ଲେ ଜେନ୍ ଛଡ଼ା ଆଉ କାହାରି ପ୍ରତି ଦୃଷ୍ଟି ଦେଉନଥିଲେ । ତାଙ୍କର ଭଉଣୀ ଦୁହେଁ ଏଲିଜାବେଥଙ୍କୁ ଅତି ହୀନ ଦୃଷ୍ଟିରେ ଦେଖୁଥିଲେ । ଏସବୁ ସତ୍ତ୍ୱେ ମିସେସ୍ ବେନେଟଙ୍କର

ଦୃଢ ବିଶ୍ୱାସ ଥିଲା ଯେ ତାଙ୍କର ଗୋଟିଏ ଝିଅ ମିଃ ବିଙ୍ଗ୍‌ଲେଙ୍କୁ ବିବାହ ହୋଇ ନେଡରଫିଲ୍‌ଡ଼ରେ ରହିବ ଓ ଅନ୍ୟ ଗୋଟିଏ ମିଃ କଲିନ୍‌ସଙ୍କୁ ବିବାହ କରି ହାନ୍‌ସଫୋର୍ଡରେ ରହିବ ।

## ଏଲିଜାବେଥ ଓ କଲିନସଙ୍କ ବିବାହ ପ୍ରସ୍ତାବ

ଏହି ଘଟଣାର ପରଦିନ ମିସେସ୍ ବେନେଟ୍, ଏଲିଜାବେଥ ଓ କିଟି ଏକାଠି ବସି କଥାବାର୍ତ୍ତା ହେଉଥିବା ସମୟରେ ମିଃ କଲିନ୍‌ସ ଆସି କହିଲେ, "ମିସେସ୍ ବେନେଟ୍, ଏଲିଜାବେଥଙ୍କ ସହିତ ମୁଁ ଏକାନ୍ତରେ ଗୋଟାଏ ବିଷୟରେ କଥାବାର୍ତ୍ତା ହେବାକୁ ଚାହେଁ । ସେଥିପାଇଁ ଆପଣଙ୍କ ଅନୁମତି ଦରକାର ।"

"ନିଶ୍ଚୟ ! ଏଲିଜାବେଥ ତୁମ ସହିତ କଥାବାର୍ତ୍ତା ହେଲେ ଆନନ୍ଦିତ ହେବ ।"—ଏହା କହି ମିସେସ୍ ବେନେଟ୍ କିଟିକୁ ସଙ୍ଗରେ ନେଇ ଘରୁ ବାହାରିଯିବାକୁ ବସିଲେ ।

ଏଲିଜାବେଥ କହିଲେ, "ମାଆ, ତୁମର ଏଠାରୁ ଚାଲିଯିବା ଦରକାର ନାହିଁ । ମିଃ କଲିନ୍‌ସଙ୍କ ସହିତ ମୋର କୌଣସି ଗୁପ୍ତ କଥା ଆଲୋଚନା ହେବାର ନାହିଁ । ମି. କଲିନ୍‌ସ, ମୋତେ କ୍ଷମା କରିବେ, ମୁଁ ବରଂ ବାହାରିଯାଉଛି ।"

ମିସେସ୍ ବେନେଟ୍ କହିଲେ, "ନା, ନା, ସେମିତି କହନା । ତୋତେ ଏଇଠାରେ ରହିବାକୁ ହେବ ।" ଏହା କହି ସେ କିଟି ସହିତ ବାହାରି ଗଲେ । ଏଲିଜାବେଥ ଅଗତ୍ୟା ବସି ରହିଲେ । ମିଃ କଲିନ୍‌ସ କହିଲେ, "ମୁଁ ଏଠାକୁ ଆସିଲାବେଳୁ ତୁମକୁ ମୋର ଜୀବନ ସଙ୍ଗିନୀ ରୂପେ ସ୍ଥିର କରି ନେଇଛି । ମୁଁ ଯେ କାହିଁକି ତୁମକୁ ବିବାହ କରିବାକୁ ଚାହେଁ, ତାହା କହିଦେବା ଉଚିତ । ପ୍ରଥମ କାରଣ ହେଉଛି, ମୋ ମତରେ ପାର୍ସନ ମାନେ ବିବାହ କରି ଆଦର୍ଶ ପାରିବାରିକ ଜୀବନ ଦେଖାଇବା ଆବଶ୍ୟକ । ଦ୍ୱିତୀୟତଃ ବିବାହ କରିବାଦ୍ୱାରା ମୋର ଜୀବନ ସୁଖମୟ ହେବ । ତୃତୀୟତଃ ଯେଉଁ ମହିଳା ମୋତେ ଏହି ପାର୍ସନ୍ ପଦରେ ପ୍ରତିଷ୍ଠିତ କରି

ସାହାଯ୍ୟ କରିଆସିଛନ୍ତି, ତାଙ୍କର ପରାମର୍ଶରେ ମୁଁ ବିବାହ କରିବାକୁ ସ୍ଥିର କରିଛି । ମୁଁ ଆଇନ ଅନୁସାରେ ତୁମ ପିତାଙ୍କ ସମ୍ପତ୍ତିର ଉତ୍ତରାଧିକାରୀ । ତାଙ୍କର ଗୋଟିଏ ଝିଅକୁ ମୁଁ ବିବାହ କଲେ ସେ ପ୍ରକାରାନ୍ତରେ ପୈତୃକ ସମ୍ପତ୍ତିକୁ ଭୋଗକରିବେ । ମୁଁ ତୁମ ପିତାଙ୍କଠାରୁ କିଛି ଯୌତୁକ ଚାହେଁ ନାହିଁ । ତୁମ ମାଆଙ୍କର ଯେଉଁ ସମ୍ପତ୍ତି ଅଛି, ତାଙ୍କ ଅନ୍ତେ ତୁମେ ତାହା ପାଇବ । ସେଥିରୁ ଶତକଡ଼ା ଚାରି ସୁଧ ହାରରେ ତୁମେ ବର୍ଷକୁ ହଜାରେ ପାଉଣ୍ଡ ପାଇପାରିବ ।"

ସେ ଅନ୍ତର କେତେ କଥା କହିଯାଇଥାନ୍ତେ; କିନ୍ତୁ ଏଲିଜାବେଥ କହିଲେ, "ଆଉ ବିଶେଷ କହିବାରେ ଲାଭ ନାହିଁ । ଆପଣ ମୋତେ ବିବାହ କରିବାକୁ ପ୍ରସ୍ତାବ ଦେଇଥିବାରୁ ଆପଣଙ୍କୁ ଶତ ଧନ୍ୟବାଦ; କିନ୍ତୁ ମୁଁ ଏ ପ୍ରସ୍ତାବ ଗ୍ରହଣ କରିବାକୁ ଆଦୌ ଇଚ୍ଛୁକ ନୁହେଁ ।"

ମି. କଲିନ୍‌ସ ଏଥିରେ ନିରସ୍ତ ନ ହୋଇ କହିଲେ, "ମୁଁ ତୁମର ଉଦ୍ଦେଶ୍ୟ ବୁଝିପାରୁଛି । ଭଦ୍ରମହିଳାମାନେ ପ୍ରଥମେ ପ୍ରଥମେ ଏପରି ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥାନ୍ତି; କିନ୍ତୁ ପ୍ରକୃତରେ ସେ ପ୍ରସ୍ତାବରେ ସେମାନେ ସ୍ୱୀକୃତ ଥାନ୍ତି । ତେଣୁ ମୁଁ ନିରାଶ ହେବାର କାରଣ ଦେଖୁନାହିଁ । ଆମର ବିବାହ ନିଶ୍ଚୟ ହେବ ।"

ଏଲିଜାବେଥ କହିଲେ, "ଅନ୍ୟମାନେ ପ୍ରଥମେ ମନା କରି ପରେ ସ୍ୱୀକୃତ ହେଉଥିବେ; କିନ୍ତୁ ମୁଁ ଯାହା କହୁଛି ଅନ୍ତରରୁ କହୁଛି । ଆମ ଦୁହିଁଙ୍କର ବିବାହ ହେଲେ ଦୁହିଁଙ୍କ ଭିତରୁ କେହି ସୁଖୀ ହୋଇପାରିବେ ନାହିଁ ।"

ମି· କଲିନ୍‌ସଙ୍କର ବିଶ୍ୱାସ, ଏଲିଜାବେଥଙ୍କ ମନର କଥା ଭିନ୍ନପ୍ରକାର । ଏଲିଜାବେଥ ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିପାରନ୍ତି, ଏହା ତାଙ୍କ କଳ୍ପନାର ଅତୀତ । ସେ କହିଲେ, "ଏଲିଜାବେଥ, ତୁମକୁ ଯେ ଅନ୍ୟ କେହି ବିବାହ କରିବାକୁ ଚାହାଁନ୍ତିବେ ସେପରି ଆଶା ନାହିଁ, କାରଣ ତୁମର ପିତା ଯୌତୁକ ଦେବାକୁ ଅକ୍ଷମ । ଆମ ଦୁହିଁଙ୍କର ବିବାହ ଉଭୟଙ୍କ ପକ୍ଷରେ ମଙ୍ଗଳକର ହେବ ।"

ଏଲିଜାବେଥ ବିରକ୍ତ ହୋଇ ସେ ଘରୁ ବାହାରି ଗଲେ । ଏହାର ଠିକ୍ ପରେ ତାଙ୍କ ମାଆ ଅସି ମିଃ କଲିନ୍‌ସଙ୍କଠାରୁ ସମସ୍ତ କଥା ଶୁଣିଲେ । ତାଙ୍କ ମନରେ ଦୁଃଖ ହେଲା; କିନ୍ତୁ ସେ କହିଲେ, "ମୁଁ ତାକୁ ବୁଝାଇ ଦେଲେ ସବୁ ଠିକ୍ ହୋଇଯିବ । ସେ ପିଲାଟାଏ; ତାର ବୁଦ୍ଧି କେତେ ? ତାର ଭଲ ପାଇଁ ଯେ ଏ ବିବାହ ଦରକାର, ତାହା ମୁଁ ତାକୁ ବୁଝାଇଦେବି ।"

ସଙ୍ଗେ ସଙ୍ଗେ ସେ ସ୍ୱାମୀଙ୍କ ପାଖକୁ ଯାଇ କହିଲେ, "ଶୀଘ୍ର ଆସ । ଆମେ ସବୁ ଅଡୁଆରେ ପଡ଼ିଛୁ । ଲିଜି କହୁଛି, ସେ ମିଃ କଲିନ୍‌ସଙ୍କୁ ବିବାହ ହେବ ନାହିଁ । ତୁମେ ଶୀଘ୍ର ତାକୁ ବୁଝାଇ ରାଜି କରାଅ, ନୋହିଲେ ମିଃ କଲିନ୍‌ସ ତାଙ୍କର ମତ ବଦଳାଇପାରନ୍ତି ।"

ମିଃ ବେନେଟ୍ ଖଣ୍ଡେ ବହି ପଢ଼ୁଥିଲେ । ସେ ବହିରୁ ମୁହଁ ଟେକି କହିଲେ, "ମୁଁ ତୁମ କଥା ବୁଝିପାରୁନାହିଁ । ଏପରି କ୍ଷେତ୍ରରେ ମୁଁ କଅଣ କରିପାରେ ?"

"କାହିଁକି ? ଏଲିଜାବେଥକୁ କହିବ । କଲିନ୍‌ସଙ୍କୁ ବିବାହ କରିବା ପାଇଁ ତାକୁ ବାଧ୍ୟ କରିବ ।"

"ଆଚ୍ଛା, ତାକୁ ମୋପାଖକୁ ପଠାଇଦିଅ ।"

ଏଲିଜାବେଥ ଆସିବାରୁ ମିଃ ବେନେଟ୍ କହିଲେ, "ଲିଜି, କଲିନ୍‌ସ ତୋତେ ବିବାହ କରିବାପାଇଁ ପ୍ରସ୍ତାବ ଦେଇଛନ୍ତି ?"

"ହଁ ବାପା ।"

"ତୁ ସେ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଛୁ ?"

"ହଁ ।"

"ତୋର ମାଆଙ୍କର ଜିଦ୍, ତୁ ଏ ପ୍ରସ୍ତାବରେ ରାଜିହୋଇଯାଅ ।"

"ନା, ମୁଁ ରାଜି ହୋଇ ପାରିବି ନାହିଁ ।"

"ତୋ ପକ୍ଷରେ ଦୁଇଟି ପନ୍ଥା ଅଛି । ମିଃ କଲିନ୍‌ସଙ୍କୁ ତୁ ବିବାହ ନକଲେ, ତୋର ମାଆ ତୋ ମୁହଁକୁ ଚାହିଁବେ ନାହିଁ । ଆଉ ନିଜ ଇଚ୍ଛା ବିରୁଦ୍ଧରେ ତୁ ତାଙ୍କୁ ବିବାହ କଲେ ମୁଁ ତୋ ମୁହଁ ଚାହିଁବି ନାହିଁ ।"

ମିସେସ୍ ବେନେଟ୍ ଏଲିଜାବେଥଙ୍କ ମତ ପରିବର୍ତ୍ତନ ପାଇଁ ଲାଗିପଡ଼ିଲେ ।

ଏଲିଜାବେଥ କିନ୍ତୁ ତାଙ୍କ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ ତାହା କଲିନ୍ସ ବୁଝିପାରିଲେ ନାହିଁ । କିନ୍ତୁ ଏଥିରେ ଦୁଃଖିତ ହେଲେ ନାହିଁ । ଏଲିଜାବେଥଙ୍କ ପ୍ରତି ତାଙ୍କର ଅଧିକ ପ୍ରେମ ନଥିଲା । ସେ ଏଲିଜାବେଥଙ୍କ ସହିତ ବେଶି ସମୟ କଟାଇବା ପରିବର୍ତ୍ତେ ମିସ୍ ଲୁଇକାସଙ୍କ ସଙ୍ଗେ କଟାଇଲେ ।

## ମିସ୍ ସ୍ତର୍ଲୋଟ ଲୁଉକାସ୍ ଓ କଲିନ୍ସଙ୍କ ବିବାହପ୍ରସ୍ତାବ

ମିଃ ଭିଙ୍ଗଲହାମ ମେଣ୍ଟନରୁ ବେନେଟ୍ ଭଉଣୀମାନଙ୍କ ସହିତ ଲଙ୍ଗବୋର୍ଣ୍ଣକୁ ଫେରିଆସିଲେ । ଏଲିଜାବେଥ ନିଜ ପିତାମାତାଙ୍କ ପାଖରେ ତାଙ୍କୁ ପରିଚିତ କରାଇଦେଲେ ।

ଏହି ସମୟରେ ମିସ୍ ବିଙ୍ଗ୍‌ଲେଙ୍କ ପାଖରୁ ଜେନ୍ ଖଣ୍ଡିଏ ଚିଠି ପାଇଲେ । ସେଥିରୁ ଜାଣିଲେ ଯେ ମିଃ ବିଙ୍ଗ୍‌ଲେ, ତାଙ୍କର ଦୁଇଭଉଣୀ ଓ ମି. ହର୍ଷ୍ଟ ନେଦରଫିଲ୍ଡରୁ ଲଣ୍ଡନ ଯାଇଛନ୍ତି ଓ ସେଠାକୁ ଆଉ ଫେରିବାର ଆଶା ନାହିଁ । ଏହି ସମ୍ବାଦରେ ଜେନ୍‌ଙ୍କ ମନରେ ବିଶେଷ ଦୁଃଖ ହେଲା । ସେହି ଚିଠିରୁ ଅଧିକ ମଧ୍ୟ ଜଣାଗଲା ଯେ ମି. ବିଙ୍ଗ୍‌ଲେ ଓ ତାଙ୍କ ଦୁଇ ଭଉଣୀ ମିସ୍ ଡାର୍‌ସିଙ୍କ ସଙ୍ଗେ ଦେଖା କରିବାକୁ ଯାଉଛନ୍ତି ଓ ଖୁବ୍ ନିକଟରେ ମିସ୍ ଡାର୍‌ସିଙ୍କ ସହିତ ବିଙ୍ଗ୍‌ଲେଙ୍କର ବିବାହ ହେବ । ପ୍ରକାରାନ୍ତରରେ ମିସ୍ ବିଙ୍ଗ୍‌ଲେ ଜଣାଇଦେଇଥିଲେ ଯେ ମିଃ ବିଙ୍ଗ୍‌ଲେ ଜେନ୍‌ଙ୍କୁ ବିବାହ କରିବାକୁ ଚାହାନ୍ତି ନାହିଁ ।

ଏଲିଜାବେଥ ଜେନ୍‌ଙ୍କୁ କହିଲେ—ମି. ବିଙ୍ଗ୍‌ଲେ ତୋତେ ବିବାହ କରିବାକୁ ଚାହାନ୍ତି; କିନ୍ତୁ ତାଙ୍କ ଭଉଣୀର ଇଚ୍ଛା ସେ ମିସ୍ ଡାର୍‌ସିକୁ ବିଭା ହୁଅନ୍ତୁ । ବିଙ୍ଗ୍‌ଲେଙ୍କର ତୋ ପ୍ରେମ ପ୍ରତି ଯେ ଆକର୍ଷଣ ଅଛି, ସେଥିରେ ସନ୍ଦେହ ନାହିଁ । ମିସ୍ ବିଙ୍ଗ୍‌ଲେ ମଧ୍ୟ ସେକଥା ଜାଣନ୍ତି; କିନ୍ତୁ ମିଃ ବିଙ୍ଗ୍‌ଲେ ମିସ

ଡାର୍‌ସିଙ୍କୁ ବିବାହ କଲେ ମି· ଡାର୍‌ସିଙ୍କ ସହିତ ମିସ୍ ବିଙ୍ଗ୍‌ଲେଙ୍କ ବିବାହର ବାଟ ସଫାହୋଇଯିବ ।

ଜେନ୍ କହିଲେ—"ତୋ କଥା ଯଦି ଠିକ୍ ହୋଇଥାଏ, ତେବେ ମୁଁ ମି: ବିଙ୍ଗ୍‌ଲେଙ୍କୁ କିପରି ବିବାହ କରିବି ? ତାଙ୍କର ବନ୍ଧୁବାନ୍ଧବଙ୍କର ଇଚ୍ଛା ଅନ୍ୟ ପ୍ରକାର ।"

ଏଲିଜାବେଥ—ଏପରି ସ୍ଥଳେ ତୁମର କର୍ତ୍ତବ୍ୟ କଅଣ ତାହା ତୁମେ ନିଜେ ସ୍ଥିର କରିବା ଉଚିତ । ମି. ବିଙ୍ଗ୍‌ଲେଙ୍କୁ ବିବାହ କରି ସୁଖରେ ରହିବା ଓ ତାଙ୍କ ଭଉଣୀମାନଙ୍କ ଇଚ୍ଛା ପୂରଣ କରିବା, ଏ ଦୁଇଟି ମଧ୍ୟରୁ ଗୋଟିଏ ବାଛି ନେବାକୁ ହେବ ।

ଜେନ୍‌ଙ୍କର ଦୃଢ଼ ବିଶ୍ୱାସ ଥିଲା, ମି· ବିଙ୍ଗ୍‌ଲେ ଶୀଘ୍ର ନେଦରଫିଲ୍‌ଡ଼କୁ ଆସିବେ ଓ ତାଙ୍କର ଆଶା ପୂରଣ କରିବେ ।

ଏଥିମଧ୍ୟରେ ଆଉ ଗୋଟିଏ ଘଟଣା ଘଟିଗଲା । ମି: କଲିନ୍‌ସ ଲଙ୍ଗବୋର୍ଣ୍ଣରୁ ଯିବାର ଦୁଇଦିନ ପରେ ଲିଉକାସଲଜ୍‌କୁ ଯାଇ ମିସ୍ ଷ୍ଟାର୍ଲୋଟ ଲିଉକାସଙ୍କୁ ବିବାହ କରିବାର ପ୍ରସ୍ତାବ ଆଗତ କଲେ । ସାର୍ ଉଇଲିୟମ ଓ ଲେଡି ଲିଉକାସ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ । ଲେଡ଼ି ଲିଉକାସ ଭାବିଥାନ୍ତି—ମି. ବେନେଟଙ୍କର ମୃତ୍ୟୁ ଯେତେ ଶୀଘ୍ର ହୁଏ ତେତେ ମଙ୍ଗଳ । ତାହାହେଲେ ତାଙ୍କର ସମସ୍ତ ସମ୍ପତ୍ତି ନିଜର ଜାମାତା ମି· କଲିନ୍‌ସଙ୍କର ହସ୍ତଗତ ହେବ । ମି: କଲିନସଙ୍କ ବିଷୟରେ ଷ୍ଟାର୍ଲୋଟଙ୍କର ଭଲ ଧାରଣା ନଥିଲେହେଁ ସେ ତାଙ୍କୁ ପତିରୂପେ ଗ୍ରହଣ କରିବାରେ ଆପତ୍ତି କରିନଥିଲେ । ବିବାହିତ ଜୀବନ ତାଙ୍କ ପକ୍ଷରେ ସୁଖକର ହୋଇନପାରେ, କିନ୍ତୁ ସେ ଅଭାବଗ୍ରସ୍ତ ହେବେ ନାହିଁ ବୋଲି ଆଶା କରିଥିଲେ । ଜଣେ ସତେଇଶ ବର୍ଷର ମହିଳା ପକ୍ଷରେ ଗୋଟିଏ ସ୍ୱାମୀ ପାଇବାହିଁ ଭାଗ୍ୟର ବିଷୟ । ଏଲିଜାବେଥଙ୍କ ସହିତ ଷ୍ଟାର୍ଲୋଟଙ୍କର ଅନ୍ତରଙ୍ଗ ବନ୍ଧୁତା ଥିବାରୁ ସେ ନିଜର ବିବାହ ବିଷୟ କହିବା ପାଇଁ ଏଲିଜାବେଥଙ୍କ ପାଖକୁ ଆସିଲେ ।

ଏଲିଜାବେଥ ଷ୍ଟାର୍ଲୋଟଙ୍କଠାରୁ ସବୁ ଶୁଣି ଏକାବେଳେ ବିସ୍ମିତ ହୋଇଗଲେ । ସେ କହିଉଠିଲେ—ନା, ଏକଥା ଅସମ୍ଭବ । ଷ୍ଟାର୍ଲୋଟ

କହିଲେ—ତୁମେ ବିସ୍ମିତ ହେବ ମୁଁ ଜାଣେ । ଏଇ ଦିନକେଇଦିନ ଆଗେ ସେ ତୁମକୁ ବିଭା ହେବେ ବୋଲି କହୁଥିଲେ । ଆଜି ସେ ମୋତେ ବିବାହ କରୁଛନ୍ତି ଶୁଣିଲେ ତୁମେ ବିସ୍ମିତ ହେବାର କଥା ।

ଏଲିଜାବେଥ ପ୍ରକୃତିସ୍ଥ ହୋଇ କହିଲେ, "ସ୍କାର୍ଲେଟ, ତୁମର ବୈବାହିକ ଜୀବନ ସୁଖମୟ ହେଉ, ଏହାହିଁ ମୋର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।"

ଏଲିଜାବେଥଙ୍କ ମନରେ ଗଭୀର ଦୁଃଖ । ମିଃ କଲିନସଙ୍କର ତାଙ୍କ ପ୍ରତି ବ୍ୟବହାର ଏହି ଦୁଃଖର ଗୋଟିଏ କାରଣ । ଅନ୍ୟ କାରଣ ହେଲା, ତାଙ୍କର ବାନ୍ଧବୀ ସ୍କାର୍ଲେଟ କଲିନସଙ୍କୁ ବିବାହ କରି ସୁଖ ପାଇ ପାରିବ ନାହିଁ ।

ସବୁଠାରୁ ବେଶି ଦୁଃଖ ହେଲା ମିସେସ୍ ବେନେଟଙ୍କର । ତାଙ୍କର ସବୁ ଆଶା ମାଟିରେ ମିଶିଗଲା । ସେହି ଦିନ ଉପରବେଳା ସାର୍ ଉଇଲିଅମ ନିଜେ ଆସି ମିଃ ବେନେଟଙ୍କ ପରିବାରକୁ ସ୍କାର୍ଲେଟର ବିବାହ ସମ୍ବାଦ ଜଣାଇଲେ । ମିସେସ୍ ବେନେଟ୍ ଏ ସମ୍ବାଦ ବିଶ୍ୱାସ କରିପାରିଲେ ନାହିଁ । ହୁଏତ ମି. କଲିନସଙ୍କୁ ଭୁଲାଇ ତାଙ୍କର ସ୍ୱୀକୃତି ନିଆଯାଇଛି । ଏପ୍ରକାର ବିବାହ କାହାରି ପକ୍ଷରେ ସୁଖକର ହେବ ନାହିଁ । ଶେଷ ମୁହୂର୍ତ୍ତରେ ଏ ବିବାହ ପ୍ରସ୍ତାବ ଭାଙ୍ଗିଯିବାର ସମ୍ଭାବନା ଯଥେଷ୍ଟ । ମିସେସ୍ ବେନେଟ୍ ଏଲିଜାବେଥଙ୍କ ଉପରେ ବିରକ୍ତ ହୋଇ କହିଲେ, "ତୁ ନିଜେ ଏ ବିପଦ ବରଣ କରି ଆଣିଛୁ ।"

ଅନେକ ଦିନ ଯାଏ ମିସେସ୍ ବେନେଟ୍ ଏଲିଜାବେଥଙ୍କୁ ଗାଳି ଦେବାରେ ଲାଗିଲେ; ସାର୍ ଉଇଲିଅମ୍ ଓ ଲେଡ଼ି ଲିଉକାସଙ୍କୁ ଦେଖିଲେ କଥା କହିଲେ ନାହିଁ । ସ୍କାର୍ଲେଟ ଉପରେ ତାଙ୍କ କ୍ରୋଧର ବିରାମ ହେଲା ନାହିଁ । ତାଙ୍କ କ୍ରୋଧର ବିଶେଷ କାରଣ ହେଲା ଦିନେ ଏଇ ସ୍କାର୍ଲୋଟ ତାଙ୍କର ଲଙ୍ଗବୋର୍ଣ୍ଣରେ ଥିବା ସମ୍ପତ୍ତି ଭୋଗ କରିବ । ଏହା ତାଙ୍କ ପକ୍ଷରେ ଅସହ୍ୟ ବୋଧହେଲା ।

ସେ ସ୍ୱାମୀଙ୍କୁ କହିଲେ, "ସ୍କୋର୍ଲେଟ ଆସି ଆମର ସମ୍ପତ୍ତି ଭୋଗ କରିବ, ଏହା ମୁଁ ସହିପାରିବି ନାହିଁ ।"

ମି· ବେନେଟ୍ ଉତ୍ତର କଲେ, "ତୁମେ ଏପରି ନିରାଶ ହେବା ଦରକାର ନାହିଁ । ହୁଏତ ତୁମର ମୃତ୍ୟୁ ପରେ ମୋର ମୃତ୍ୟୁ ହେବ । ତାହାହେଲେ ସ୍କୋର୍ଲେଟ ଓ କଲିନ୍‌ସ ଆମ ସମ୍ପତ୍ତି ଅଧିକାର କରିବା ତୁମେ ଦେଖିବ ନାହିଁ; ତେଣୁ ତୁମର କଷ୍ଟ ଭୋଗିବା ପ୍ରଶ୍ନ ନାହିଁ ।

ମିସେସ୍ ବେନେଟ୍ କିଛି ଉତ୍ତର ନଦେଇ ସ୍ୱାମୀଙ୍କ ନିକଟରୁ ଚାଲିଗଲେ ।

## ଦୁଇ ଭଉଣୀଙ୍କ ଦୁଃଖ

ମିଃ ବିଙ୍ଗ୍‌ଲେଙ୍କ ପାଖରୁ ଲଙ୍ଗବୋର୍ଣ୍ଣକୁ କୌଣସି ସମ୍ବାଦ ନ ଆସିବାରୁ ଏଲିଜାବେଥ୍‌ର ସନ୍ଦେହ ହେଲା ଯେ, ତାଙ୍କ ଭଉଣୀ ଦୁହେଁ ମିଃ ବିଙ୍ଗ୍‌ଲେଙ୍କୁ ଜେନ୍‌ଙ୍କଠାରୁ ଦୂରରେ ରଖିଛନ୍ତି । ଜେନ୍ ଏକାବାରେ ନିରାଶ ହୋଇପଡ଼ିଲେ ।

ଶେଷରେ ମିସ୍ ବିଙ୍ଗ୍‌ଲେଙ୍କ ପାଖରୁ ଖଣ୍ଡିଏ ଚିଠି ଆସିଲା । ସେଥିରେ ସେମାନେ ଛୁଟି ଲଣ୍ଡନରେ କଟାଇବେ ବୋଲି ଲେଖିଥିଲେ । ସେଥିରୁ ଆହୁରି ଜଣାପଡ଼ିଲା, ମିଃ ବିଙ୍ଗ୍‌ଲେ ଓ ମିସ୍ ଡାର୍‌ସିଙ୍କ ବିବାହ ଖୁବ୍ ନିକଟରେ ହେବ । ମିଃ ବିଙ୍ଗ୍‌ଲେ ମିସ୍ ଡାର୍‌ସିଙ୍କୁ ଭଲ ପାଆନ୍ତି ବୋଲି ଏଲିଜାବେଥଙ୍କର ଆଦୌ ବିଶ୍ୱାସ ନଥିଲା । ସେ ମନେକଲେ, ମିଃ ବିଙ୍ଗ୍‌ଲେ ନିତାନ୍ତ ଦୁର୍ବଳମନା, ଭଉଣୀମାନଙ୍କର ଏକାନ୍ତ ଅନୁଗତ ।

ଦିନେ ଜେନ୍ ଏଲିଜାବେଥଙ୍କୁ କହିଲେ, "ମାଆ ନିଜକୁ ସଂଯତ ରଖି ପାରୁ ନାହାନ୍ତି । ସେ ବିଙ୍ଗ୍‌ଲେଙ୍କୁ ସମାଲୋଚନା କରିବାଦ୍ୱାରା ମୋତେ ଯେ କି କଷ୍ଟ ଦେଉଛନ୍ତି ତାହା ନିଜେ ଜାଣି ପାରୁ ନାହାନ୍ତି । ବିଙ୍ଗ୍‌ଲେ ଯାହା କରନ୍ତୁ ନା କାହିଁକି, ମୋ ମତରେ ସେ ଜଣେ ଆଦର୍ଶ ପୁରୁଷ । ମୋର ନିଜର ଭ୍ରମଯୋଗୁଁ ଏଭଳି ପରିସ୍ଥିତି ଉପୁଜିଛି । ମୋତେ ତାର ପରିଣାମ ଭୋଗିବାକୁ ହେବ ।"

ଏଲିଜାବେଥ କହିଲେ, "ଅପା, ତୁମେ ଏତେ ଭଲ ଯେ କାହାର ଦୋଷ ଦେଖି ପାରୁ ନାହଁ ।"

କମେ ସେମାନେ ମି: ବିଙ୍ଗ୍‌ଲେଙ୍କୁ ଭୁଲିଯିବାକୁ ଚେଷ୍ଟା କଲେ ।

ବେନେଟ୍ ଭଉଣୀମାନଙ୍କର ଗୋଟିଏ ଆଶ୍ୱାସନାର କାରଣ ଥିଲା । ମି: ଉଇକହାମ୍ ବାରମ୍ବାର ଆସି ବେନେଟ୍ ପରିବାରକୁ ଆନନ୍ଦ ଦେଉଥିଲେ । ମି. ଡାର୍‌ସିଙ୍କ ସହିତ ତାଙ୍କର ସଦ୍ଭାବ ନଥିବା କଥା ସମସ୍ତେ ଜାଣି ସାରିଥିଲେ । ସମସ୍ତେ ମି. ଡାର୍‌ସିଙ୍କର ନିନ୍ଦା କରୁଥିଲେ, କେବଳ ଜେନ୍‌ଙ୍କର ମତ ଭିନ୍ନ ଥିଲା । ସେ କହୁଥିଲେ, ମି. ଡାର୍‌ସିଙ୍କ କାର୍ଯ୍ୟକଳାପର କୌଣସି ବିଶେଷ କାରଣ ଥିବ ।

ବଡ଼ଦିନ ଛୁଟି ହେବାରୁ ମିସେସ୍ ବେନେଟ୍‌ଙ୍କ ଭାଇ ଓ ଭାଉଜ କିଛି ଦିନ ପାଇଁ ଚିପ୍‌ସାଇଡରୁ ଆସି ଲଙ୍ଗବୋର୍ଣ୍ଣରେ ରହିଲେ । ମି: ଗାର୍ଡିନର ଶିକ୍ଷା ଓ ଅନ୍ୟାନ୍ୟ ଗୁଣରେ ମିସେସ୍ ବେନେଟ୍‌ଙ୍କଠାରୁ ଉଚ୍ଚରେ ଥିଲେ । ମିସ୍ ବିଙ୍ଗ୍‌ଲେ ଓ ମିସେସ୍ ହର୍ଷ୍ଟ ଆଶା କରିପାରି ନଥିଲେ ଯେ ମି. ଗାର୍ଡିନର ଏତେ ଭଦ୍ର ହୋଇଥିବେ । ମିସେସ୍ ଗାର୍ଡିନର ମଧ୍ୟ ନିଜର ଆନ୍ତରିକ ବ୍ୟବହାର ଦ୍ୱାରା ସମସ୍ତଙ୍କୁ କିଣିନେଇଥିଲେ ।

ମିସେସ୍ ବେନେଟ୍ ପରିବାରର ବିପର୍ଯ୍ୟସ୍ତ ବିଷୟ ଭାଉଜଙ୍କ ଆଗରେ ପ୍ରକାଶ କରି କହିଲେ, "ଦୁଇଟି ଝିଅଙ୍କର ବିବାହ ସ୍ଥିର ହୋଇ ଯାଇଥିଲା; କିନ୍ତୁ ଶେଷ ମୁହୂର୍ତ୍ତରେ ବିବାହ ହୋଇ ପାରିଲା ନାହିଁ ।"

ତେବେ ମିସେସ୍ ଗାର୍ଡିନର ପ୍ରସ୍ତାବ କଲେ, "ଜେନ୍‌ର ମନ ଖରାପ ଅଛି । ସେ କିଛି ଦିନ ପାଇଁ ଲଣ୍ଡନ ଗଲେ ତା ମନରେ ପରିବର୍ତ୍ତନ ଆସିବ । ସେଠାରେ ମି: ବିଙ୍ଗ୍‌ଲେଙ୍କର ଦେଖା ମିଳିବା ସମ୍ଭବ ନୁହେଁ ।"

ଜେନ୍ ଲଣ୍ଡନକୁ ଯିବାପାଇଁ ଆନନ୍ଦରେ ସ୍ୱୀକୃତ ହେଲେ । ସେଠାରେ ସେ ସମୟେ ସମୟେ ମିସ୍ ବିଙ୍ଗ୍‌ଲେଙ୍କୁ ଭେଟିବେ ବୋଲି ଆଶା କଲେ । ମି: ବିଙ୍ଗ୍‌ଲେ ମି: ଡାର୍‌ସିଙ୍କ ସଙ୍ଗରେ ରହୁଥିଲେ, ତେଣୁ ସେ ମିସ୍ ବିଙ୍ଗ୍‌ଲେଙ୍କୁ ଏକୁଟିଆ ଭେଟିପାରିବେ । ଏଲିଜାବେଥ ଭାବୁଥିଲେ, ମିସ୍ ବିଙ୍ଗ୍‌ଲେ ସେମାନଙ୍କ ସହିତ ସମ୍ବନ୍ଧ ଏକବାରେ ତୁଟାଇଦେବେ ।

ଜେନ୍ ଲଣ୍ଡନରେ କେତୋଟି ଦିନ ରହିଲା ପରେ କେରୋଲିନ ବିଙ୍ଗ୍‌ଲେଙ୍କଠାରୁ ଚିଠି ପାଇ ତାଙ୍କ ଘରକୁ ଗଲେ । କିନ୍ତୁ ସେଠାରେ ଆନ୍ତରିକ

ଅଭ୍ୟର୍ଥନା ପାଇଲେ ନାହିଁ । କିଛି ଦିନ ପରେ କେରୋଲିନ ଜେନ୍‌ଙ୍କ ପାଖକୁ ଆସି କିଛି ସମୟ ରହି ଫେରିଗଲେ । ତାଙ୍କର ବ୍ୟବହାରରୁ ଜେନ୍ ଜାଣିପାରିଲେ ଯେ ସେ ବୃଥା ମରୀଚିକା ପଛରେ ଧାଇଁଛନ୍ତି । ମି. ବିଙ୍ଗ୍‌ଲେ ଜେନ୍‌ଙ୍କ ସହିତ ଦେଖା ସୁଦ୍ଧା କଲେନାହିଁ ।

ଏଣେ ଏଲିଜାବେଥଙ୍କର ମଧ୍ୟ ଦୁଃଖର ସୀମା ନଥିଲା । ମିଃ ଉଇକ୍‌ହାମ୍ ତା ପ୍ରତି ଯେଉଁ ଆଦର ଦେଖାଉଥିଲେ, ତାହା କ୍ରମେ କମି ଆସିଲା । ଏଲିଜାବେଥ ଜାଣିପାରିଲେ ଯେ ଉଇକହାମ୍ ପ୍ରକୃତରେ ତାଙ୍କୁ ଚାହାନ୍ତି ନାହିଁ । ତାଙ୍କର ଧନ ଥିଲେ ହୁଏତ ଉଇକ୍‌ହାମ୍ ତାଙ୍କୁ ଆଦରରେ ଗ୍ରହଣ କରିଥାନ୍ତେ । ଅନୁସନ୍ଧାନରୁ ଜଣାଗଲା ମିଃ ଉଇକହାମ ମିସ୍ କିଙ୍ଗ ବୋଲି ଜଣେ ମହିଳାଙ୍କ ପ୍ରତି ଆସକ୍ତ । ଏହି ମହିଳାଙ୍କ ବାର୍ଷିକ ଆୟ ଦଶ ହଜାର ପାଉଣ୍ଡ । ଏଲିଜାବେଥ୍ ନିଜର ଅର୍ଥାଭାବ ଉପରେ ସବୁ ଦୋଷ ଲଦାଇ ଦେଇ ମନକୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ । ସେ ଯେ ଅନ୍ତରର ସହିତ ଉଇକ୍‌ହାମଙ୍କୁ ଭଲପାଉଥିଲେ ତାହା ନୁହେ । ତେଣୁ ସେ ମିଃ ଉଇକ୍‌ହାମ୍ ବା ମିସ୍ କିଙ୍ଗ୍‌ଙ୍କ ପ୍ରତି ଈର୍ଷା ପ୍ରକାଶ କଲେ ନାହିଁ ।

## ହାନ୍‌ସଫୋର୍ଡରେ ଏଲିଜାବେଥ

ମିଃ କଲିନ୍‌ସ ଓ ଚାର୍ଲୋଟ ଲୁଇକାସଙ୍କର ବିବାହ ହୋଇଗଲା । ନବ ଦମ୍ପତି ହାନ୍‌ସଫୋର୍ଡ଼ରେ ବାସ କରିବାକୁ ଲାଗିଲେ । ଏଲିଜାବେଥ ଚାର୍ଲୋଟଙ୍କଠାରୁ ନିୟମିତ ଭାବରେ ଚିଠି ପାଉଥିଲେ । ସେଥିରୁ ଚାର୍ଲୋଟ ଖୁବ୍ ସୁଖରେ ଥିବାର ଜଣାପଡ଼ୁଥିଲା ।

ଚାର୍ଲୋଟ ହାନ୍‌ସଫୋର୍ଡକୁ ଯିବା ପୂର୍ବରୁ ଏଲିଜାବେଥଙ୍କୁ ସେଠାକୁ ଯିବା ପାଇଁ ନିମନ୍ତ୍ରଣ କରିଥିଲେ । ମାର୍ଚ୍ଚ ମାସରେ ଏହି ସୁଯୋଗ ମିଳିଲା । ଏଲିଜାବେଥ ସାର୍ ଉଇଲିୟମ ଓ ତାଙ୍କ ସାନ ଝିଅ ମେରିଆ ସହିତ ଯିବାର ସ୍ଥିରହେଲା । ଯିବାବେଳେ ସାର୍ ଉଇଲିୟମ ଓ ମେରିଆ ଲଣ୍ଡନରେ ରାତିଟିଏ କଟାଇବାର କଥା ଥିଲା ।

ଏଲିଜାବେଥ ମିଃ ଉଇଲହାମ୍‌ଙ୍କଠାରୁ ବିଦାୟ ନେଲେ । ତାଙ୍କର ଧାରଣା, ମିଃ ଉଇକହାମ୍ ତାଙ୍କୁ ବିବାହ କରନ୍ତୁ ବା ନକରନ୍ତୁ, ସେ ଯେ ଜଣେ ଆଦର୍ଶ ଯୁବକ ଏଥିରେ ସନ୍ଦେହ ନାହିଁ ।

ସାର୍ ଉଇଲିୟମ ଓ ମେରିଆ ଗୃହକି ଲଣ୍ଡନରେ କଟାଇଲେ । ଜେନ୍‌ଙ୍କର କୌଣସି ପରିବର୍ତ୍ତନ ନଦେଖି ଏଲିଜାବେଥଙ୍କ ମନରେ ଆନନ୍ଦ ହେଲା । କିନ୍ତୁ ସେ ମିସେସ୍ ଗାର୍ଡ଼ିନରଙ୍କଠାରୁ ଶୁଣିଲେ ଯେ ବିଂହାରକୁ ଜଣାଯାଉ ନଥିଲେ ସୁଦ୍ଧା ଜେନ୍ ମନେ ମନେ ଖୁବ୍ ଦୁଃଖରେ ଅଛନ୍ତି ।

ଏଲିଜାବେଥ ମିସେସ୍ ଗାର୍ଡିନରଙ୍କଠାରୁ ଶୁଣିପାରିଲେ ଯେ ମିଃ ଉଇକ୍-ହାମଙ୍କ ଅତୀତ ଇତିହାସ କଳଙ୍କମୟ । ସବଦା ନୂଆ ମହିଳାଙ୍କ ପଛରେ ଧାଇଁବା ତାଙ୍କର ପ୍ରକୃତି । ପ୍ରେମ ଅପେକ୍ଷା ଧନର ମୂଲ୍ୟ ତାଙ୍କ ଆଗରେ ଅଧିକ ।

ଯାହାହେଉ ଏଲିଜାବେଥ କଲିନ୍‌ସଙ୍କଠାରୁ ନିମନ୍ତ୍ରଣ ପାଇ ହାନ୍‌ସଫୋର୍ଡ ଗଲେ । ସ୍ଲୋଟ ଓ କଲିନ୍‌ସ ତାଙ୍କୁ ଖୁବ୍ ଆଦର ଅଭ୍ୟର୍ଥନା କଲେ । ଘରର ଆସବାବ, ବଗିଚା ପ୍ରଭୃତି ତାଙ୍କୁ ଦେଖାଇଲେ । ବଗିଚାରେ ଛିଡ଼ା ହେଲେ ଲେଡି କାଥେରିନଙ୍କର ରୋଜିଙ୍ଗସ ବଙ୍ଗଳା ଦେଖାଯାଏ । କଲିନ୍‌ସ ପ୍ରତି ସପ୍ତାହରେ ଥରେ ଦୁଇ ଥର ରୋଜିଙ୍ଗସ୍ ବଙ୍ଗଳାରେ ଭୋଜନ କରନ୍ତି ଓ ଲେଡି କାଥେରିନ୍ ତାଙ୍କ ବ୍ୟବହାର ପାଇଁ ଗୋଟିଏ ଘୋଡ଼ାଗାଡ଼ି ଏକ ପ୍ରକାରେ ଛାଡ଼ିଦେଇଛନ୍ତି ବୋଲି ସେ ଏଲିଜାବେଥଙ୍କୁ କହିଲେ । ନିଜର ବଡ ପଣ ଦେଖାଇଦେବା କଲିନ୍‌ସଙ୍କର ଉଦ୍ଦେଶ୍ୟ ଥିଲା ।

ଏହାର ପର ଦିନ ଦୁଇ ଜଣ ମହିଳା ଘୋଡ଼ା ଗାଡ଼ିରେ ବସି ହାନ୍‌ସ-ଫୋର୍ଡ଼ରେ ଉପସ୍ଥିତ ହେଲେ । ଏଲିଜାବେଥ ଭାବିଥିଲେ, ଦୁହିଁଙ୍କ ଭିତରୁ ଜଣେ ହୋଇଥିବେ ଲେଡ଼ି କାଥେରିନ୍ ଓ ଅନ୍ୟ ଜଣକ ହୋଇଥିବେ ତାଙ୍କ ଝିଅ, କିନ୍ତୁ ପରେ ଜଣାଗଲା, ବର୍ଷୀୟସୀ ମହିଳାଜଣକ ହେଉଛନ୍ତି ଲେଡ଼ି କାଥେରିନ୍‌ଙ୍କ ଝିଅର ଶିକ୍ଷୟିତ୍ରୀ ଓ ଅନ୍ୟ ଜଣକ ମିସ୍ ଡିବର୍ଗ ।

ଏହି ମିସ୍ ଡ଼ିବର୍ଗଙ୍କର ଶରୀର ଅତି କ୍ଷୀଣ । ଏଲିଜାବେଥ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ମିଃ କଲିନ୍‌ସ, ତାଙ୍କ ପତ୍ନୀ ସ୍ଲୋଟ ମିସ୍

ଡିବ୍‌ରେଙ୍କୁ ଅଭିନନ୍ଦନ ଜଣାଇଲେ । ମିସ ଡ଼ିବ୍‌ରେ ପରଦିନ ରୋଜିଙ୍ଗସରେ ଭୋଜି ସକାଶେ ସମସ୍ତଙ୍କୁ ନିମନ୍ତ୍ରଣ କରିବାକୁ ଆସିଥିଲେ । ସାର୍ ଉଇଲିୟମ ଓ ଏଲିଜାବେଥ୍ ମଧ୍ୟ ମିସ୍ ଡ଼ିବରେଙ୍କୁ ଉପଯୁକ୍ତ ଆଦର ଦେଖାଇବାରେ ତ୍ରୁଟି କରି ନଥିଲେ । ଏହି ନିମନ୍ତ୍ରଣରେ ସମସ୍ତେ ନିଜକୁ ଗୌରବାନ୍ୱିତ ମନେକଲେ ।

## ଲେଡ଼ି କାଥେରିନ୍‌ଙ୍କ ନିମନ୍ତ୍ରଣ

ସେ ଦିନସାକ ଓ ପରଦିନ ସକାଳ ସାକ କେବଳ ରୋଜିଙ୍ଗସକୁ ଯିବା ବିଷୟରେ ଆଲୋଚନା ହେଲା । ସେଠାରେ କଅଣ କଅଣ ଦେଖିବାକୁ ମିଳିବ ତାର ବର୍ଣ୍ଣନା ଦେଇ ମି· କଲିନ୍‌ସ କହିଲେ, "ଏସବୁ ଦେଖି ହତ-ବୁଦ୍ଧି ହୋଇଯିବା ଉଚିତ ନୁହେଁ ।" ବୃନ୍ଦେ ଟି, ମେ· ଆ ପ୍ରସ୍ତୁତ ପୋଷାକ ପିନ୍ଧିବାକୁ ଗଲେ । କଲିନସ୍ ଏଲିଜାବେଥଙ୍କୁ କହିଲେ, "ତୁମେ ପୋଷାକରେ ଆଡ଼ମ୍ବର ଦେଖାଇବା ପ୍ରୟୋଜନ ନାହିଁ । ଲେଡି କାଥେରିନ୍ ବା ତାଙ୍କ ଝିଅ ଯେପରି ଆଡମ୍ବରପୂର୍ଣ୍ଣ ପୋଷାକ ପିନ୍ଧନ୍ତି ଅନ୍ୟ କେହି ସେପରି ପୋଷାକ ପିନ୍ଧିଲେ ସେ ବିରକ୍ତ ହୁଅନ୍ତି । ସମାଜରେ ଯେ ଯେଉଁ ସ୍ତରର ଲୋକ ସେ ସେହି ସ୍ତରର ଲୋକ ଭଳି ଚଳିବା ଉଚିତ; ଏହା ହିଁ ଲେଡ଼ି କାଥେରିନ୍‌ଙ୍କର ମତ ।"

ପାଗ ବେଶ୍ ଶୁଖିଲା ଥିଲା । ସେମାନେ ଖୁସି ଗଳ୍ପ କରି କରି ଚାଲିଲେ । ମିଃ କଲିନ୍‌ସ ରୋଜିଙ୍ଗସ ବଙ୍ଗଳାର ବିଶଦ ବର୍ଣ୍ଣନା କରୁଥିଲେ । ତାହାର ଉପକରଣଗୁଡ଼ିକର ମୂଲ୍ୟର ସୂଚନା ଦେଉଥିଲେ । କିନ୍ତୁ ଏଲିଜାବେଥ ଏ ସବୁ ଦିଗରେ ଆଗ୍ରହ ପ୍ରକାଶ କରୁନଥିଲେ । ତଥାପି ସେ ମୋଟ ଉପରେ ଏହି ବଙ୍ଗଳାର ପ୍ରଶଂସା କରୁଥିଲେ ।

ହଲ୍ ପାଖରେ ପହଞ୍ଚିଲାକ୍ଷଣି ମେ· ଆଙ୍କ ମନରେ ଭୟ ଜାତହେଲା; ସାର୍ ଉଇଲିଅମ ବିଚଳିତ ହୋଇ ପଡ଼ିଲେ । କିନ୍ତୁ ଏଲିଜାବେଥଙ୍କର କିଛି ପରିବର୍ତ୍ତନ ହୋଇ ନ ଥିଲା । ଲେଡ଼ି କାଥେରିନଙ୍କର କିଛି ବିଶେଷ ପ୍ରତିଭା ବା ଗୁଣ ଅଛି ବୋଲି ସେ ବିଶ୍ୱାସ କରୁ ନଥିଲେ । କେବଳ ସେ ଉଚ୍ଚ କୁଳରେ ଜନ୍ମ ଓ ବେଶୀ ଧନୀ—ଏଥିପାଇଁ ତାଙ୍କୁ ଭୟ ବା ସମ୍ଭ୍ରମ ଦେଖାଇ-ବାର କାରଣ ଖୋଜି ସେ ପାଉ ନଥିଲେ ।

ଭୃତ୍ୟମାନେ ଅଥିତମାନଙ୍କୁ ବାଟ ଦେଖାଇ ଗୋଟିଏ କୋଠରୀକୁ ନେଇଗଲେ । ସେଠାରେ ଲେଡ଼ି କାଥେରନେ୍, ତାଙ୍କର ଝିଅ ଏବଂ ଶଯ୍ୟାସଙ୍ଗିନୀ ମିସେସ୍ ଜେଙ୍କିନସନ୍ ବସିଥିଲେ । ଲେଡ଼ି କାଥେରନେ୍ ଉଠିପଡ଼ି ସେମାନଙ୍କୁ ସ୍ୱାଗତ ଜଣାଇଲେ ଓ ସେଥିରେ ଆନ୍ତରିକତା ନ ଥିଲା ବୋଲି ଜଣା ପଡ଼ି ଯାଉଥିଲା । ତାଙ୍କ କଥାବାର୍ତ୍ତାରୁ ତାଙ୍କର ଆତ୍ମାଭିମାନ ପ୍ରକାଶ ପାଉଥିଲା ।

ତାଙ୍କ ଝିଅ ରୁଗ୍ଣ ଦେଖାଯାଉଥିଲେ; ମିସେସ୍ ଜେଙ୍କିନ୍ସନଙ୍କ ଛଡ଼ା ଆଉ କାହାରିକୁ ସେ କିଛି କହୁ ନଥିଲେ ।

ଭୋଜନ ସମୟରେ ସବୁ ଲୋକର ଉପସ୍ଥିତ ରହିଥିଲେ । ଖାଦ୍ୟଦ୍ରବ୍ୟ-ଗୁଡ଼ିକ ଯେ ଉତ୍କୃଷ୍ଟ ଧରଣର ଥିଲା ଏଥିରେ ସନ୍ଦେହ ନାହିଁ । ମିଃ କଲିନ୍ସ ଟେବୁଲର ଗୋଟିଏ ମୁଖ୍ୟ ଭାଗରେ ବସିଲେ ଏବଂ ପ୍ରତ୍ୟେକ ପ୍ରକାର ଖାଦ୍ୟର ଉଚ୍ଚ ପ୍ରଶଂସା କଲେ । ସାର୍ ଉଇଲିଅମ ମଧ୍ୟ ସେହିପରି ପ୍ରଶଂସା କରୁଥିଲେ । ଲେଡ଼ି କାଥେରିନ୍ କୌଣସି ମନ୍ତବ୍ୟ ପ୍ରକାଶ ନକରି କେବଳ ମୃଦୁ ହାସ୍ୟ କରୁଥିଲେ ।

ଭୋଜନ ପରେ ସମସ୍ତେ ବୈଠକଖାନାକୁ ଆସିଲେ । ଲେଡ଼ି କାଥେରିନ୍ ପ୍ରତ୍ୟେକ ବିଷୟରେ ନିଜର ମତ ବ୍ୟକ୍ତ କରୁଥିଲେ ; ଅନ୍ୟମାନେ ନୀରବରେ ତାହା ଶୁଣୁଥିଲେ । ତାଙ୍କ ମତର ବିରୋଧ କରିବା କାହାରି କଳ୍ପନାକୁ ଆସୁ ନ ଥିଲା । ସେ ଗୃହ ପରିଚାଳନା ବିଷୟରେ ଚାର୍ଲୋଟକୁ କେତେକ ଉପଦେଶ ଦେଲେ ଓ ଏଲିଜାବେଥଙ୍କଠାରୁ ବେନେଟ ପରିବାରର ସମ୍ବାଦ ସଂଗ୍ରହ କରିବାକୁ ଲାଗିଲେ । ସେମାନେ କେତେ ଭଉଣୀ, ଦେଖିବାକୁ କିପରି, ବିଭା ହେଲେଣି କି ନା, ସେମାନେ କେତେ ଦୂର ଶିକ୍ଷା ପାଇଛନ୍ତି, ତାଙ୍କର କେତୋଟା ଘୋଡ଼ାଗାଡ଼ି ଅଛି ଏହିଭଳି ଅନେକ ପ୍ରଶ୍ନର ଉତ୍ତର ଏଲିଜାବେଥଙ୍କୁ ଦେବାକୁ ପଡ଼ିଥିଲା । ତାଙ୍କ ମନରେ ବିରକ୍ତି ଆସୁଥିଲେହେଁ ସେ ଭଦ୍ରତା ରକ୍ଷାକରି ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେଲେ ।

ଶେଷରେ ଲେଡ଼ି କାଥେରିନ୍ ପଚାରିଲେ, " ତୁମେ ଗୀତ ଗାଇ ଜାଣ ? ବାଦ୍ୟ ବଜାଇ ଶିଖିଛ ?"

"ହଁ, ସାମାନ୍ୟ ଜାଣେ ।"

"ତେବେ ବେଳେ ବେଳେ ତୁମର ଗାନବାଜଣା ଶୁଣିବା । ଆମର ପିଆନୋଟି ଉତ୍କୃଷ୍ଟ ଧରଣର । ପରେ ସେଥିରେ ବଜାଇ ଦେଖିବ । ତୁମ ଭଉଣୀମାନେ ଗାନବାଜଣା ଜାଣନ୍ତି ?"

"ଗୋଟିଏ ଭଉଣୀ କିଛି ଜାଣେ ।"

"ସମସ୍ତଙ୍କର ଶିଖିବା ଉଚିତ ଥିଲା । ମିଃ ଓ୍ୱେବସ୍‌ଙ୍କର ଆୟ ତୁମ ବାପାଙ୍କ ଆୟଠାରୁ ଊଣା ହେବ ; କିନ୍ତୁ ତାଙ୍କର ସବୁ ଝିଅ ଗୀତବାଦ୍ୟରେ ନିପୁଣ । ତୁମ ଭଉଣୀମାନେ ତୁମ ସାଥିରେ ବଲ୍‌ନାଚକୁ ଯାଆନ୍ତି ତ ?"

"ହଁ, ସମସ୍ତେ ଯାଆନ୍ତି ।"

"କଅଣ—ପାଞ୍ଚଜଣଯାକ ଏକାବେଳେ ଯାଅ ? ବଡ଼ ଆଶ୍ଚର୍ଯ୍ୟ କଥା ! ବଡ଼ ଭଉଣୀର ବିବାହ ନ ହେଉଣୁ ସାନ ଭଉଣୀମାନେ ବଲ୍‌ନାଚରେ ଯୋଗ ଦିଅନ୍ତି ?"

"ବଡ଼ ଭଉଣୀଙ୍କର ବିବାହ ହୋଇ ନାହିଁ ବୋଲି ସାନ ଭଉଣୀମାନେ ଯେ ସବୁ ପ୍ରକାର ଆମୋଦ ପ୍ରମୋଦରୁ ବଞ୍ଚିତ ହେବେ ଏହାର କୌଣସି କାରଣ ନାହିଁ । ସାନ ବଡ଼ ସମସ୍ତଙ୍କର ଆନନ୍ଦ ଉପଭୋଗ କରିବାର ଅଧିକାର ଅଛି ।"

ଲେଡ଼ି କାଥେରିନ୍ ଭାବିଥିଲେ ଯେ ଜଗତରେ କେହି ତାଙ୍କ ମତର ବିରୋଧ କରି ନ ପାରେ । ଏଲିଜାବେଥ୍‌ଙ୍କ କଥା ଶୁଣି ସେ ବିସ୍ମୟରେ କହିଲେ, "ତୁମର ବୟସ କମ୍ ବୋଲି ମନେହୁଏ, କିନ୍ତୁ ମତ ପ୍ରକାଶ କରିବାରେ ତୁମେ ଟିକିଏ କୁଣ୍ଠିତ ନୁହ । ତୁମର ବୟସ କେତେ ?"

ଏଲିଜାବେଥ ସ୍ପଷ୍ଟ ଉତ୍ତର ନ ଦେଇ କହିଲେ,"ମୋର ତଳକୁ ତିନୋଟି ଭଉଣୀ ଅଛନ୍ତି । ସମସ୍ତେ ବିବାହଯୋଗ୍ୟା । ମୋର ବୟସ କେତେ କହିବା ଦରକାର ନାହିଁ ।"

ବୋଧହୁଏ ଅନ୍ୟ କେହି ଲେଡି କାଥେରିନଙ୍କୁ ଏପରି ମୁହେଁ ମୁହେଁ ପ୍ରତିବାଦ କରାଇ ନଥିଲା ।

ଦୁଇଟି ଟେବୁଲରେ ତାସ ଖେଳ ଲାଗିଲା । ଖେଳ ସହିତ ଗପ ମଧ୍ୟ ଚାଲିଥାଏ । କିଛି ସମୟ ପରେ ଲେଡ଼ି କାଥେରିନ୍ ଓ ତାଙ୍କ ଝିଅ ଅଭ

ଖେଳିବାକୁ ଇଚ୍ଛା ନକରିବାରୁ ଗାଡ଼ି ଡକାଗଲା । ମିଃ କଲିନ୍ସ ଲେଡ଼ି କାଥେରିନ୍‌ଙ୍କୁ ବାରମ୍ବାର ଧନ୍ୟବାଦ ଦେଲେ । ସାର୍ ଉଇଲିଅମ ମଧ୍ୟ ବିଦାୟ ସମ୍ଭାଷଣ ଜଣାଇଲେ । ତାପରେ ଅତିଥିମାନେ ସେ ସ୍ଥାନ ତ୍ୟାଗ କଲେ ।

## ଏଲିଜାବେଥ ଓ ଫିଜ୍‌ଉଇଲିଅମ

ରୋଜିଙ୍ଗସ୍ ହାଉସରେ ଏହି ପ୍ରକାର ଆମୋଦ ପ୍ରମୋଦ ପ୍ରାୟ ପ୍ରତି ସପ୍ତାହରେ ଦୁଇ ଥର ଲେଖାଏଁ ହେଉଥିଲା । ଏଲିଜାବେଥ ସେ ସବୁରେ ସେତେ ଆନନ୍ଦିତ ହେଉ ନ ଥିଲେ, ସ୍ମାର୍ଲୋଟ ସହିତ ଗପକରି ଓ ବଗିଚାରେ ବୁଲି ତହିଁରୁ ଅଧିକ ଆନନ୍ଦ ପାଉଥିଲେ ।

ମି: ଡାର୍ସି ବଡ଼ଦିନ ଛୁଟି ରୋଜିଙ୍ଗସରେ କଟାଇବାର କଥା ଥିଲା । ମି. କଲିନ୍ସ ତାଙ୍କୁ ସମ୍ବର୍ଦ୍ଧନା କରିବାପାଇଁ ରୋଜିଙ୍ଗସକୁ ଆସିଲେ ।

ମି. ଡ଼ାର୍ସି ତାଙ୍କ ସଙ୍ଗରେ ନିଜ ଦାଦା-ପୁଅ-ଭାଇ କର୍ଣ୍ଣେଲ ଫିଜ୍‌ଉଇଲିଅମଙ୍କୁ ସେନି ଆସିଥିଲେ । ମି. କଲିନ୍ସ ସେ ଦୁହିଁଙ୍କ ସଙ୍ଗେ ଯୋଗ ଦେଲେ । ସ୍ମାର୍ଲୋଟ ଏମାନଙ୍କୁ ଦେଖାଇ ଏଲିଜାବେଥଙ୍କୁ କହିଲେ,"ମି: ଡ଼ାରସି ଯେ ଏତେ ଶୀଘ୍ର ଏଠାକୁ ଆସିଲେ, ସେଥିପାଇଁ ତୁମକୁ ଧନ୍ୟବାଦ ଦେବାର କଥା ।"

ଏଲିଜାବେଥ ଏ କଥାର ମର୍ମ ବୁଝିପାରିଲେ । ସେ ଏଥିର ପ୍ରତିବାଦ କରିଥାନ୍ତେ, କିନ୍ତୁ ଅତିଥିଦ୍ୱୟ ଘର ଭିତରକୁ ଆସିବାରୁ ସେ କିଛି କହିପାରିଲେ ନାହିଁ । ଫିଜ୍‌ଉଇଲିଅମଙ୍କର ବୟସ ପ୍ରାୟ ତିରିଶ ବର୍ଷ । ଦେଖିବାକୁ ଅସୁନ୍ଦର ହେଲେ ହେଁ ତାଙ୍କର ଆଚରଣରେ ଭଦ୍ରତା ପ୍ରକାଶ ପାଉଥିଲା । ମି. ଡାର୍ସିଙ୍କର କିଛି ପରିବର୍ତ୍ତନ ଘଟି ନଥିଲା । ସେ ଏଲିଜାବେଥଙ୍କୁ ପୂର୍ବପରି ସମ୍ଭାଷଣକଲେ ଓ ଏଲିଜାବେଥ ନୀରବରେ ତାହା ଗ୍ରହଣ କଲେ ।

ଏଥି ମଧ୍ୟରେ ଫିଜ୍‌ଉଇଲିଅମ କଥାବାର୍ତ୍ତାରେ ଲାଗିଗଲେ । ପ୍ରସଙ୍ଗକ୍ରମେ ମି. ଡ଼ାର୍ସି ଏଲିଜାବେଥଙ୍କୁ ତାଙ୍କ ଘର ଖବର ପଚାରିଲେ । ଘରେ ସମସ୍ତେ ଭଲଥିବାର ଜଣାଇ ଶେଷରେ ଏଲିଜାବେଥ ପଚାରିଲେ, "ମୋର ବଡ଼ଭଉଣୀ ଜେନ୍ ଗତ ତିନି ମାସ ହେଲା ସହରରେ ଅଛି । ତାକୁ ଦେଖି ନାହାନ୍ତି ?"

ଏ ପ୍ରଶ୍ନ ପଚାରିବାର ଏକ ଉଦ୍ଦେଶ୍ୟ ଥିଲା । ବିଙ୍ଗଲେ ପରିବାର ଓ ଜେନ୍ ଭିତରେ ବର୍ତ୍ତମାନ ସମ୍ପର୍କ କିପରି ସେ ବିଷୟରେ ଡାର୍ସି କିଛି ଜାଣିଛନ୍ତି କି ନା ତାହା ଜାଣିବା ଏଲିଜାବେଥଙ୍କର ଲକ୍ଷ୍ୟ ଥିଲା । ଟିକିଏ ଚିନ୍ତିତ ରହି ମିଃ ଡାର୍ସି ଉତ୍ତର କଲେ, "ନା, ମୁଁ ତାଙ୍କୁ ଦେଖି ନାହିଁ ।" ଏହା ପରେ ଅତିଥି ଦୁହେଁ ଚାଲିଗଲେ ।

କିଛି ଦିନ ପରେ ଇଷ୍ଟର୍ ପର୍ବ ପଡ଼ିଲା । ଏହି ଉପଲକ୍ଷରେ ଲେଡ଼ି କାଥେରିନ୍ ପୁଣି ମିଃ ଡାର୍ସି ଓ ଫିଜଉଇଲିଅମଙ୍କୁ ନିମନ୍ତ୍ରଣ କଲେ । ନିର୍ଦ୍ଦିଷ୍ଟ ଦିନ ସେ ଦୁହେଁ ଆସି ପହଞ୍ଚିଲେ । ମି. ଫିଜଉଇଲିଅମଙ୍କ ଦୃଷ୍ଟିରେ ମିସେସ୍ କଲିନ୍ସଙ୍କର ବାନ୍ଧବୀ ଏଲିଜାବେଥ ଅତି ସୁନ୍ଦରୀ ବୋଲି ବୋଧ ହେଲେ । ସେ ଏଲିଜାବେଥଙ୍କ ପାଖରେ ବସି ଗଳ୍ପ କରିବାକୁ ଲାଗିଲେ । ତାଙ୍କ କଥାବାର୍ତ୍ତାରେ ଏଲିଜାବେଥ ଏକବାରେ ମୁଗ୍ଧ ହୋଇଗଲେ । ଏଲିଜାବେଥ ଓ ଫିଜଉଇଲିଅମ ହସ ଖୁସିରେ ଗପ କରୁଥିଲା ବେଳେ ମି. ଡାରସି ଓ ଲେଡ଼ି କାଥେରିନ ସେମାନଙ୍କ ଆଡ଼କୁ ବାରମ୍ବାର ଦୃଷ୍ଟି ପକାଉଥିଲେ ।

ଲେଡ଼ି କାଥେରିନ୍ ଶେଷରେ କହିଲେ "ତୁମେ ଦୁହେଁ କି ଗପ କରୁଛ ମୁଁ ଶୁଣିପାରେ କି ?"

ଫିଜ୍ଉଇଲିଅମ ଉତ୍ତର କଲେ, "ଆମେ ସଙ୍ଗୀତ ବିଷୟରେ ଗଳ୍ପ କରୁଛୁ ।"

ଲେଡ଼ି କାଥେରିନ୍—"ସଙ୍ଗୀତ ! ବେଶ୍, ତାହାତ ମୋର ପ୍ରିୟ ବିଷୟ । ତେବେ ମୁଁ ତୁମ ଦୁହିଁଙ୍କ ସଙ୍ଗେ ଆଲୋଚନାରେ ଯୋଗ ଦେବି । ଶିଖିଥିଲେ ସଙ୍ଗୀତ ବିଦ୍ୟାରେ ମୁଁ ଜଣେ ବିଶାରଦ ହୋଇ ପାରିଥାନ୍ତି । ଆନ୍ନ ମଧ୍ୟ ଶିଖିଥିଲେ ସେହିପରି ହୋଇଥାନ୍ତା । ଆଚ୍ଛା, ମିଃ ଡାର୍ସି, ତୁମ ଭଉଣୀ ଜର୍ଜିୟାନାର ସଙ୍ଗୀତ ଚର୍ଚ୍ଚା କେତେ ଦୂର ଗଲା ?"

ମିଃ ଡାର୍ସି ଭଉଣୀର ସଙ୍ଗୀତ ପ୍ରୀତି ବର୍ଣ୍ଣନା କଲେ । ତହୁଁ ଲେଡ଼ି କାଥେରିନ କହିଲେ, "ତାଙ୍କୁ କହିବ, ମୁଁ କହିଛି ବୋଲି, ସେ ଖୁବ୍ ଅଭ୍ୟାସ କରିବେ । ଏଲିଜାବେଥଙ୍କୁ ମଧ୍ୟ ତାହା କହୁଛି । ସଙ୍ଗୀତରେ ଅଭ୍ୟାସ ହେଉଛି

ପ୍ରଧାନ କଥା । କର୍ନ୍ ଆନା ଏଠାକୁ ପ୍ରତିଦିନ ଆସି ମିସେସ୍ ଜେଙ୍କିନସନଙ୍କ କୋଠରୀରେ ପିଆନୋ ବାଜା ଅଭ୍ୟାସ କରିପାରିବେ । ସେ କୋଠରୀରେ ଅନ୍ୟ କେହି ଚଳପ୍ରଚଳ ହୁଅନ୍ତି ନାହିଁ ।" ମିଃ ଡ଼ାର୍‌ସି ଚୁପ୍‌କରି ରହିଲେ ।

ଭୋଜନ ପରେ ଫିଜ୍‌ଉଇଲିଅମ ଏଲିଜାବେଥଙ୍କୁ ପିଆନୋ ବଜାଇବାକୁ ଅନୁରୋଧ କଲେ । ସେ ପିଆନୋ ବଜାଇଲେ ଓ ଉଇଲିଅମ ପାଖ ଚଉକିରେ ବସି ଶୁଣିବାକୁ ଲାଗିଲେ । ଲେଡ଼ି କାଥେରିନ କିଛି ବେଳ ଯାଏ ବାଜା ଶୁଣି ମିଃ ଡ଼ାରସିଙ୍କ ସଙ୍ଗେ କଥାବାର୍ତ୍ତା କଲେ । ଅଳ୍ପ ସମୟ ପରେ ମି. ଡାର୍‌ସି ପିଆନୋ ପାଖରେ ଛିଡ଼ା ହୋଇ ଏଲିଜାବେଥଙ୍କୁ ଚାହିଁଲେ । ସେ ଗୋଟିଏ ସଙ୍ଗୀତ ଶେଷ କରି କହିଲେ, "ତୁମେ ମତେ ଚମକେଇଦେବାକୁ ଭାବିଥିଲ, ମିଃ ଡ଼ାର୍‌ସି । କିନ୍ତୁ ମୁଁ ଚମକିପଡ଼ିବାର ପାତ୍ରୀ ନୁହେଁ । ମୋର ଖୁବ୍ ସାହସ ଅଛି ।"

ମିଃ ଡ଼ାର୍‌ସି ଉତ୍ତର କଲେ, "ମୁଁ ତୁମକୁ ଭଲକରି ଜାଣେ । ମୁଁ ଚମକାଇ ଦେବାକୁ ଆସିନାହିଁ ବୋଲି ତୁମର ବିଶ୍ୱାସ । ତୁମେ ମୁହଁରେ ଯାହା କହ, ମନରେ ତାର ବିପରୀତ ଭାବ ଥାଏ ।"

ଏଲିଜାବେଥ ହସି ହସି ଫିଜ୍‌ଉଇଲିଅମଙ୍କୁ କହିଲେ, "ଦେଖ, ତୁମ ଭାଇ ମୋ କଥାକୁ ବିଶ୍ୱାସ କରୁନାହାନ୍ତି । ଆଉ ମିଃ ଡ଼ାରସି, ତୁମେ ମଧ୍ୟ ମୋ ପ୍ରତି ଅନ୍ୟାୟ କରୁଛ । ହାର୍ଟଫୋଡ଼ସାୟାରରେ ମୋର କି ଦୋଷ ଦେଖିଥିଲ, ତାହା କହିବୁ ଲୁଚ । ମୁଁ ତୁମ ବିଷୟରେ ଯାହା ଜାଣେ କହିବି ?"

ମିଃ ଡାର୍‌ସି ହସି ହସି ମୁହଁରେ କହିଲେ, "ସେଥିକି ମୋର ଭୟ ନାହିଁ ।"

ଫିଜ୍‌ଉଇଲିଅମ କହିଲେ, "ତାଙ୍କର କି ଦୋଷ ଅଛି ଶୁଣାଯାଉ ।"

ଏଲିଜାବେଥ କହିଲେ, "ବେଶ୍ ଶୁଣ । ପ୍ରଥମେ ମୁଁ ତାଙ୍କୁ ହାର୍ଟଫୋର୍ଡ଼ଶାୟାରର ଏକ ବଲ୍ ନୃତ୍ୟରେ ଦେଖିଥିଲି । ସେ ଚାରିଥର ନୃତ୍ୟ କଲେ । ଆଉ କେତେ ଥର କଅଣ ନାଚିପାରି ନଥାନ୍ତେ ? କେତେ ମହିଳା ସଙ୍ଗୀ ଅଭାବରୁ ନୃତ୍ୟ କରି ନପାରି ବସିରହିଥିଲେ । କଅଣ, ମି. ଡାରସି, ମୁଁ ଯାହା କହୁଛି ସତ ନୁହେଁ ?"

'ମୁଁ ଯେଉଁମାନଙ୍କୁ ସଙ୍ଗରେ ନେଇ ଯାଇଥିଲି, ସେମାନଙ୍କ ଛଡ଼ା ଅନ୍ୟମାନଙ୍କ କଥା ଚିନ୍ତା କରିନଥିଲି।"

"ସେ କଥା ସତ। କିନ୍ତୁ ସେମାନଙ୍କୁ ତୁମ ସହିତ ପରିଚୟ କରାଯାଇ ପାରିଥାନ୍ତା।"

"ହଁ, ବୋଧହୁଏ ହୋଇପାରିଥାନ୍ତା। କିନ୍ତୁ ଅପରିଚିତ ଲୋକଙ୍କ ପାଖରେ ମୋତେ କିପରି ଖରାପ ଲାଗେ।"

"ଏହାର କାରଣ କଅଣ ?"

ମିଃ ଡାର୍‌ସି କିଛି କହିବା ଆଗରୁ ମି· ଫିଜ୍‌ଉଇଲିଅମ କହିଲେ, "କାରଣ ଅତି ସ୍ପଷ୍ଟ। ସେ ପରିଚିତ ହେବାର କଷ୍ଟ ସ୍ୱୀକାର କରିବାକୁ କୁଣ୍ଠିତ।"

ମିଃ ଡାର୍‌ସି—"କେତେକ ଲୋକ ଅପରିଚିତ ଲୋକଙ୍କ ସଙ୍ଗରେ ଅନାୟାସରେ ମିଶି ଗଳ୍ପ କରିପାରନ୍ତି। କିନ୍ତୁ ମୋଠାରେ ସେ ବିଦ୍ୟାର ଅଭାବ।"

ଏଲିଜାବେଥ— "ଦେଖନ୍ତୁ, ଏ ପିଆନୋ ଉପରେ ମୋର ଅଙ୍ଗୁଳି-ଗୁଡ଼ିକ ଭଲ ଚାଲୁନାହିଁ, ସେଥିପାଇଁ ମୁଁ ନିଜକୁ ଦୋଷ ଦେବାର କଥା; କାରଣ ମୁଁ ଯଥେଷ୍ଟ ଅଭ୍ୟାସ କରିନାହିଁ। ସେହିପରି ଆପଣଙ୍କର ସେଇଟା ନିଜର ଦୋଷ ନୁହେଁ କି ?"

ମିଃ ଡାର୍‌ସି—"ସେକଥା ଠିକ୍। କିନ୍ତୁ ତୁମେ ତୁମ ସମୟର ସଦ୍-ବ୍ୟବହାର କରିଅଛ। ତୁମର ଦୋଷ ଅଛି ବୋଲି କିଏ କହେ ନାହିଁ।"

ଏହିପରି ଗଳ୍ପ ଶେଷହେଲା।

## କେନ୍ ଓ ବିଙ୍ଗ୍‌ଲେଙ୍କ ବିବାହରେ ପ୍ରତିବନ୍ଧକ

ଏ ଘଟଣାର ପରଦିନ ସକାଳେ ଏଲିଜାବେଥ ବଡଭଉଣୀ ପାଖକୁ ଚିଠି ଲେଖୁଥିଲେ। ମିସେସ୍ କଲିନ୍‌ସ ଓ ମେରିଆ ଗ୍ରାମଭିତରକୁ ଯାଇଥିଲେ। ହଠାତ୍ ମି· ଡାରସି ଘର ଭିତରକୁ ପଶିଆସିଲେ।

ମେ ଏଲିଜାବେଥଙ୍କୁ ଏକାକୀ ଦେଖି ବିସ୍ମିତ ହେଲେ ଓ କ୍ଷମା ପ୍ରାର୍ଥନା କରି କହିଲେ, "ମୁଁ ଭାବିଥିଲି ଅନ୍ୟ ମହିଳାମାନେ ଘର ଭିତରେ ଥିବେ ।"

ଏଲିଜାବେଥ ଭଦ୍ରତା ଦେଖାଇ ସ୍ୱାଗତ ଜଣାଇଲେ । ମି. ଡାର୍ସି ଚଉକିରେ ବସିଲେ । କିଛି ସମୟ ଯାଏଁ ଦୁହେଁ ନୀରବ । ଶେଷରେ ଏଲିଜାବେଥ କହିଲେ, "ଗଲା ନଭେମ୍ବର ମାସରେ ଆପଣମାନେ ହଠାତ୍ ଚାଲିଗଲେ । ମି. ବିଙ୍ଗ୍‌ଲେ ଓ ତାଙ୍କ ଭଉଣୀମାନେ ଭଲ ଥିଲେ ତ ?"

"ଖୁବ୍ ଭଲ ଥିଲେ ।"

"ମୁଁ ଶୁଣିଥିଲି, ମିଃ ବିଙ୍ଗ୍‌ଲେ ଆଉ ନେଦରଫିଲ୍‌ଡ଼କୁ ଆସିବେ ନାହିଁ ?"

"ସେ ଏପରି କହିବାର ମୁଁ ଶୁଣି ନାହିଁ । କିନ୍ତୁ ହୁଏତ ନେଦରଫିଲଡ଼ରେ ରହିଣି କମିଯିବ କିମ୍ବା ସେଠାକୁ ଆଦୌ ନ ଆସି ପାରନ୍ତି ।"

ଏହା ପରେ ଦୁହିଁଙ୍କ ଭିତରେ ଅନ୍ୟ ବିଷୟରେ କଥାବାର୍ତ୍ତା ଚାଲିଲା । ଚାର୍ଲୋଟ ଓ ତାଙ୍କ ଭଉଣୀ ପହଞ୍ଚିଯିବାରୁ କଥାବାର୍ତ୍ତା ବନ୍ଦ ହୋଇଗଲା । ମିଃ ଡାର୍ସି ଏକୁଟିଆ ଏଲିଜାବେଥଙ୍କ ସଙ୍ଗେ ବସି ଗଳ୍ପ କରୁଥିବାର ଦେଖି ସେ ଦୁହେଁ ବିସ୍ମିତ ହୋଇଗଲେ । ମି. ଡାର୍ସି ଭୁଲକ୍ରମେ ସେଠାକୁ ଆସିଥିବା ପ୍ରକାଶ କଲେ ଓ କିଛି ସମୟ ପରେ ବାହାରିଗଲେ ।

ତତ୍ପରେ ଚାର୍ଲୋଟ ଏଲିଜାବେଥଙ୍କୁ କହିଲେ, "ଡାର୍ସି ତୁମକୁ ଅତି ମାତ୍ରାରେ ଭଲପାଆନ୍ତି; ତା ନୋହିଥିଲେ ସେ ଏପରି ଭାବରେ ତୁମ ପାଖକୁ ଦଉଡ଼ି ଆସି ନଥାନ୍ତେ ।"

ଏଲିଜାବେଥ ଡାର୍ସିଙ୍କ ସହ ତାଙ୍କ ସାମାନ୍ୟ କଥାବାର୍ତ୍ତାର ବିବରଣ ଦେବାରୁ ଦୁହେଁ ସ୍ଥିର କଲେ ଯେ ଡାର୍ସିଙ୍କ ଆସିବାର କୌଣସି ବିଶେଷ ଉଦ୍ଦେଶ୍ୟ ନଥିଲା, କେବଳ କୌଣସି କାମ ନଥିବାରୁ ସମୟ କଟାଇବାକୁ ଆସିଥିଲେ ।

ଏଣିକି ଦୁଇଭାଇଯାକ ପ୍ରାୟ ପ୍ରତିଦିନ ମିଃ କଲିନ୍‌ସଙ୍କ ଘରକୁ ଆସିବାକୁ ଲାଗିଲେ । ବୋଧହୁଏ ଏଠାର ଲୋକଙ୍କ ସହ ମିଳାମିଶା କରି ସେ ଦୁହେଁ ଆନନ୍ଦ ପାଉଥିଲେ । ଏଲିଜାବେଥ ଜର୍ଜ ଉଇକ୍‌ହାମ୍‌ଙ୍କ କଥା ମନେପକାଇ

ଗଲେ, ଫିଜଉଇଲିଅମ ଉଇକ୍‌ହାମଙ୍କ ପରି ଦେଖିବାକୁ ସୁନ୍ଦର ନହେଲେ ମଧ୍ୟ ଦୁହିଁଙ୍କ ଭିତରେ ଅଧିକ ବୁଦ୍ଧିମାନ୍ ।

ମି. ଡାରସି ମିଃ ବିଙ୍ଗଲେଙ୍କ ଘରକୁ ଏପରି ବାରମ୍ବାର ଆସିବାର କାରଣ କଅଣ ହୋଇପାରେ ? ଏଠାର ଲୋକଙ୍କ ସଙ୍ଗେ ମିଳାମିଶା କରିବା ଉଦ୍ଦେଶ୍ୟ ହୋଇଥିଲେ ଦଶ ପନ୍ଦର ମିନିଟ୍ ବସିଲେ ସୁଦ୍ଧା ପଦେ ହେଲେ କିଛି କହନ୍ତେ ନାହିଁକି ? ଫିଜଉଇଲିଅମ ତାଙ୍କୁ ଉପହାସ କରୁଥିଲେ ! ମିସେସ କଲିନ୍ସଙ୍କର ଧାରଣା ଡାରସି ଏଲିଜାବେଥଙ୍କୁ ଭଲପାଆନ୍ତି । କିନ୍ତୁ ସେପରି କୌଣସି ଲକ୍ଷଣ ତାଙ୍କଠାରେ ଦେଖିବାକୁ ମିଳେନାହିଁ ।

ଏଲିଜାବେଥ ପାର୍କରେ ବୁଲୁଥିବାବେଳେ ଥରେ ଥରେ ହଠାତ୍ ମିଃ ଡାରସିଙ୍କ ସହ ଭେଟ ହୋଇଯାଏ । ଏଲିଜାବେଥଙ୍କୁ ଭଲ ଲାଗେ ନାହିଁ । ଦୁହିଁଙ୍କ ଭିତରେ କ୍ୱଚିତ କଥାବାର୍ତ୍ତା ହୁଏ ।

ଦିନେ ଏଲିଜାବେଥ ବାହାରେ ବୁଲୁବୁଲୁ ଜେନଙ୍କର ଚିଠି ଖଣ୍ଡିଏ ପଢ଼ୁଥିଲେ । ଜେନ୍‌ର ମନ ଭଲ ନଥିବା ଜାଣି ସେ ଚିନ୍ତିତ ଥିଲେ । ଏହି ସମୟରେ ଫିଜ୍‌ଉଇଲିୟମ୍ ହଠାତ୍ ଆସି ଉପସ୍ଥିତ ହେଲେ । ଏଲିଜାବେଥ ଅତ୍ୟନ୍ତ ବିସ୍ମିତ ହେଲେ । ଯାହାହେଉ ଦୁହେଁ ଚାଲି ଚାଲି ଘରଆଡ଼କୁ ଫେରିଲେ ।

ଏଲିଜାବେଥ ଉଇଲିଅମଙ୍କୁ ପଚାରିଲେ, "ତୁମେ ଆସନ୍ତା ଶନିବାର ଦିନ କଅଣ ନିଶ୍ଚୟ ଯାଉଛ ?"

"ହଁ, ଯଦି ଡାରସି ଅନ୍ୟ ବ୍ୟବସ୍ଥା ନକରନ୍ତି ନିଶ୍ଚୟ ଯିବି ।"

"ଡାରସିଙ୍କର ସ୍ୱଭାବ ହେଉଛି, ଯାହା ଯେତେବେଳେ ମନ ହେବ ତାହା କରିବେ ।"

"ସେ ନିଜ ଇଚ୍ଛା ଅନୁସାରେ ସବୁବେଳେ କାମ କରନ୍ତି । ଆମେମାନେ ମଧ୍ୟ ଇଚ୍ଛା ଅନୁସାରେ କାମ କରିଥାଉଁ । କିନ୍ତୁ ସେ ଧନୀ ହୋଇଥିବାରୁ ନିଜ ଇଚ୍ଛା ପୂରଣ କରିବାକୁ ଅଧିକ ସମର୍ଥ ।"

"ବଡ଼ ହୋଇ ପଡ଼ିଲେ ଡାରସି ଜଣେ ଲୋକ ନିଜ ପାଖରେ ପାଆନ୍ତେ; ସେ ସବୁବେଳେ ତାଙ୍କ ଇଚ୍ଛା ପୂରଣ କରୁଥାନ୍ତା । ବୋଧହୁଏ ସାନ ଭଉଣୀ ବର୍ତ୍ତମାନ ତାଙ୍କ ଇଚ୍ଛାମତେ କାମ ଚଳାଉଛନ୍ତି ।"

"ନା, ସେ ସ୍ଥାନ ଭଉଣୀଙ୍କର ଅଭିଭାବକ, ତେଣୁ ତାଙ୍କର ତତ୍ତ୍ୱ ନିଅନ୍ତି । ମୁଁ ସେଥିରେ ତାଙ୍କୁ ସାହାଯ୍ୟ କରିଥାଏଁ ।"

"ସତେ ! ତେବେ ତୁମେ ଦୁହେଁ ସାନ ଝିଅର ଅଭିଭାବକ । ତା ବୟସର ଝିଅଙ୍କୁ ଚଳାଇବା କଠିନ । ଭାଇଙ୍କ ଭଳି ସେ ଯଦି ସ୍ୱାଧୀନମନା ହୋଇଥିବ, ତେବେ ତୁମକୁ ହଇରାଣ କରୁଥିବ ।"

"ମିସ୍ ଡାର୍‌ସି ମୋତେ ହଇରାଣ କରୁଥିବେ ବୋଲି ଭାବୁଛ କାହିଁକି ?"

ମିସ୍ ଏଲିଜାବେଥ ସତ୍ୟ କଥା ଅନୁମାନ କରି କହିଲେ—

"ତୁମେ ଭୟ କରିବାର କାରଣ ନାହିଁ । ମିସ୍ ଡାର୍‌ସି କାହାରି କିଛି ଅନିଷ୍ଟ କରିଥିବାର ମୁଁ ଶୁଣି ନାହିଁ । ମିସେସ୍ ହର୍ଷ୍ଟ ଓ ମିସ୍ ବିଙ୍ଗଲେ ତାଙ୍କୁ ଖୁବ୍ ଭଲପାଆନ୍ତି, ଏକଥା ମୁଁ ଜାଣେ ।"

"ମୁଁ ସେମାନଙ୍କୁ ସାମାନ୍ୟ ଜାଣେ । ମିଃ ବିଙ୍ଗଲେ ଓ ମିଃ ଡାର୍‌ସିଙ୍କର ଖୁବ୍ ବନ୍ଧୁତା ଅଛି ।"

"ମିଃ ଡାର୍‌ସି ମିଃ ବିଙ୍ଗଲେଙ୍କୁ ଖୁବ୍ ଭଲପାଆନ୍ତି; ତାଙ୍କର ଯତ୍ନ ନିଅନ୍ତି ।"

"ହିଁ, କେତେକ ଦୃଷ୍ଟିରୁ ଯତ୍ନ ନେଉଥିବେ । ସେ ଥରେ ମୋତେ ଗୋଟାଏ କଥା କହୁଥିଲେ ।"

"କଅଣ କହୁଥିଲେ, କଅଣ ?"

"ସେପରି ବିଶେଷ କିଛି ନୁହେଁ । ସେ କହୁଥିଲେ, 'ମୋର ଜଣେ ବନ୍ଧୁ ଗୋଟିଏ ଝିଅକୁ ବିବାହ କରିବାକୁ ବସିଥିଲେ । ସେ ବିବାହ ବଡ଼ ଦୁଃଖମୟ ହୋଇଥାନ୍ତା । ମୁଁ ତାଙ୍କୁ ସେଥିରୁ ରକ୍ଷା କରିଛି ।' ଅବଶ୍ୟ ସେ କାହାରି ନାମ କହି ନଥିଲେ । କିନ୍ତୁ ମୁଁ ଅନୁମାନ କରୁଛି, ସେ ବନ୍ଧୁ ମିଃ ବିଙ୍ଗଲେଙ୍କ ଛଡ଼ା ଅଉ କେହି ନୁହନ୍ତି ।"

"ମିଃ ଡାର୍‌ସି ଦୁଇ ଜଣଙ୍କର ବିବାହ ପ୍ରସ୍ତାବ ଏପରି ଭାଙ୍ଗି ଦେବାର କିଛି କାରଣ କହିଥିଲେ କି ?"

"କନ୍ୟା ବିଷୟରେ କିଛି ବିଶେଷ ଆପତ୍ତିଜନକ କଥା ଥିବ । କିନ୍ତୁ ସେ ମୋତେ କିଛି କହିନଥିଲେ ।"

ଏଲିଜାବେଥ କୌଣସି ଉତ୍ତର ନଦେଇ ଚାଲିବାକୁ ଲାଗିଲେ । ତାଙ୍କ ମନ ଚିନ୍ତାରେ ପୂର୍ଣ୍ଣ । ଦୁହେଁ ମିଃ କଲିନ୍‌ସଙ୍କ ଘରେ ପହଞ୍ଚିଲେ । ଏଲିଜାବେଥ ଯାହା ଶୁଣିଲେ ତାହା ଚିନ୍ତା କରିବା ପାଇଁ ନିଜ କୋଠରୀରେ ଏକୁଟିଆ ବସିଲେ । ମିଃ ବିଙ୍ଗ୍‌ଲେ ଓ ଜେନ୍‌ଙ୍କର ବିବାହ ଯେ ହୋଇ ପାରିଲା ନାହିଁ, ତାର କାରଣ ଏଇ ମିଃ ଡାର୍‌ସି । ଏଥିରେ ଏଲିଜାବେଥଙ୍କର ସନ୍ଦେହ ନଥିଲା । କିନ୍ତୁ ତାଙ୍କର ଧାରଣା, ମିସ୍ ବିଙ୍ଗ୍‌ଲେ ହେଉଛନ୍ତି ମୂଳ କାରଣ । ମିଃ ଡାର୍‌ସି ଗୋଟାଏ ଝିଅର ଜୀବନକୁ ଦୁଃଖମୟ କରି ପକାଇ ଅଛନ୍ତି । ଝିଅ ବିଷୟରେ କେତେକ ବିଶେଷ ଆପତ୍ତି ଥିଲା ବୋଲି ଉଇଲିଅମ କହିଲେ । ଜେନ୍‌ର କି ଦୋଷ ଥାଇପାରେ ? ତା ବିଷୟରେ କି ତା ପିତାଙ୍କ ବିଷୟରେ କେହି କିଛି ଦୋଷ ଦେଇ ନପାରେ । ଏଲିଜାବେଥ ଭାବିଲେ, 'ହଁ, ମିଃ ଡାର୍‌ସିଙ୍କ ଆଖିରେ ବଂଶମର୍ଯ୍ୟାଦା ବୁଦ୍ଧିଠାରୁ ବଡ଼ । ଜେନ୍ ବିଷୟରେ ତାଙ୍କର ଅପତ୍ତି ହୋଇଥିବ ଯେ, ତାର ଜଣେ ଦାଦା ମଫସଲରେ ସାମାନ୍ୟ ଏକ ଓକିଲ; ଅନ୍ୟ ଜଣେ ଲଣ୍ଡନରେ ଦୋକାନୀ ।'

ଘୋର ଦୁଃଖରେ ସେ କାନ୍ଦିଲେ । ସେ ଦିନ ଗୃହା ଖାଇବାକୁ ରୋଜିଙ୍ଗସକୁ ଯିବେ ନାହିଁ ବୋଲି ସେ ସ୍ଥିର କଲେ । ସେଠାକୁ ଗଲେ ମିଃ ଡାର୍‌ସିଙ୍କ ସହ ଦେଖାହୁଅନ୍ତା; କିନ୍ତୁ ଏଲିଜାବେଥ ତାଙ୍କୁ ଦେଖାଦେବାକୁ ଚାହୁଁ ନଥିଲେ । ଏଲିଜାବେଥ ନଗଲେ ଲେଡ଼ି କାଥେରିନ୍ ଅସନ୍ତୁଷ୍ଟ ହେବେ ବୋଲି ମିଃ କଲିନ୍‌ସ ମତ ପ୍ରକାଶ କଲେ ।

## ମି. ଡାରସି ଓ ଏଲିଜାବେଥ

ଏଲିଜାବେଥ ଏକୁଟିଆ ବସି ଜେନ୍‌ର ଚିଠିଗୁଡ଼ିକ ପଢୁଥିଲେ । ତାଙ୍କ ମନରେ ମି. ଡାର୍‌ସିଙ୍କ ପ୍ରତି ବିରକ୍ତି ବୃଦ୍ଧି ପାଉଥିଲା । ହଠାତ୍ ସ୍ୱୟଂ ଡାର୍‌ସି ଉପସ୍ଥିତ ହୋଇ ଏଲିଜାବେଥଙ୍କୁ ତାଙ୍କ ସ୍ୱାସ୍ଥ୍ୟ ବିଷୟରେ ପଚାରିଲେ । ଏଲିଜାବେଥ ନମ୍ର ଭାବରେ ତାଙ୍କ ପ୍ରଶ୍ନର ଉତ୍ତର ଦେଲେ । ଡାର୍‌ସି କିଛି ସମୟ ବସି ଘର ଭିତରେ ଟହଲିବାକୁ ଲାଗିଲେ । ଏଥିରେ ଏଲିଜାବେଥ ଅତ୍ୟନ୍ତ ବିସ୍ମିତ ହେଲେ, କିନ୍ତୁ କିଛି କହିଲେ ନାହିଁ । ଆହୁରି କିଛି ସମୟ ପରେ ଡାର୍‌ସି କହିବାକୁ ଆରମ୍ଭ କଲେ, "ମୁଁ ଅନେକ ବୃଥା ଚେଷ୍ଟା କରିଛି ।

ଦେଖୁଛ, ସେଥିରେ କିଛି ଲାଭ ନାହିଁ । ମୋର ମନୋଭାବକୁ ଆଉ ଦମନ କରି ପାରୁନାହିଁ । ମୁଁ ତୁମକୁ ପ୍ରେମ କରେ ।"

ବିସ୍ମୟରେ ଅଭିଭୂତ ହୋଇ ଏଲିଜାବେଥ କିଛି କହି ପାରିଲେ ନାହିଁ । ତାଙ୍କ ନୀରବତାର ସୁଯୋଗ ନେଇ ମିଃ ଡାର୍‌ସି ଅନେକ କଥା କହିଗଲେ । ତାର ସାର ମର୍ମ ହେଲା—"ମୁଁ ଉଚ୍ଚ କୁଳର ବୋଲି ଗର୍ବ କରେ । ତୁମକୁ ସେଥିପାଇଁ ନୀଚ ଦୃଷ୍ଟିରେ ଦେଖେ । କିନ୍ତୁ ମୁଁ ତୁମକୁ ଅତି ମାତ୍ରାରେ ଭଲ ପାଏ ।"

ଏଲିଜାବେଥ୍ ଡାର୍‌ସିଙ୍କୁ ଘୃଣା କରୁଥିଲେ । ତାଙ୍କ କଥାରେ ଏଲିଜାବେଥ୍‌ଙ୍କର ମନ ବଦଳିବାର କାରଣ ନଥିଲା ।

ତାଙ୍କୁ ବିବାହ କରିବା ପାଇଁ ସ୍ୱୀକୃତି ଦେବାକୁ ସେ ଏଲିବାବେଥଙ୍କୁ ଅନୁନୟ କଲେ । ଏଲିଜାବେଥ୍‌ଙ୍କ ମୁହଁ କ୍ରୋଧରେ ଲାଲ ପଡ଼ିଗଲା । ଶେଷରେ ସେ କହିଲେ, "ମୁଁ ତୁମ ସହିତ ଏକମତ ନହେଲେ ମଧ୍ୟ ଏ କ୍ଷେତ୍ରରେ ତୁମକୁ ଧନ୍ୟବାଦ ଦେବାର କଥା । ମୁଁ କେବେ ତୁମର ଅନୁଗ୍ରହ ଗୃହି ନଥିଲି । କାହାରି ମନରେ କଷ୍ଟ ଦେବା ମୋର ଅଭିପ୍ରାୟ ନୁହେଁ । ଗର୍ବ ହେତୁ ତୁମେ ଆଜିଯାଏ ମୋ ଆଗରେ ନିଜର ଅଭିପ୍ରାୟ ପ୍ରକାଶ କରିପାରୁ ନଥିଲ । ମୋର ଆଶା ସେହି ଗର୍ବ ମୋ ପ୍ରତି ତୁମର ପ୍ରେମକୁ ଦମନ କରିପାରିବ ।"

ଡାର୍‌ସିଙ୍କ ମନରେ କ୍ରୋଧ ଓ ବିସ୍ମୟ । ତାଙ୍କର ଚେହେରା ବିମର୍ଷ ହୋଇଗଲା । ନିଜକୁ ସ୍ଥିର ରଖିବା ପାଇଁ ତାଙ୍କୁ ଚେଷ୍ଟା କରିବାକୁ ହେଲା । କିଛି ସମୟ ପରେ ସେ କହିଲେ, "ମୁଁ କଅଣ ଏଇ ଉତ୍ତର ପାଇବାର ଯୋଗ୍ୟ ? ଅଭଦ୍ର ଭାବରେ ମୋତେ ପ୍ରତ୍ୟାଖ୍ୟାନ କରିବାର କାରଣ କଣ ହୋଇପାରେ ?"

ଏଲିଜାବେଥ ଉତ୍ତର କଲେ, "ନିଜ ଇଚ୍ଛା ବିରୁଦ୍ଧରେ, ସ୍ୱଭାବ ବିରୁଦ୍ଧରେ, ବିବେକ ବିରୁଦ୍ଧରେ ତୁମେ ମୋତେ ଭଲପାଉଥିଲ ବୋଲି କହି ମୋତେ ଅପମାନ ଦେବାର କାରଣ କଅଣ ପଚାରିପାରେ କି ? ଏପରି ସ୍ଥଳେ ମୁଁ ଭଦ୍ରତା ନଦେଖାଇବା ଦୋଷ ହୋଇପାରେ କି ? ଯିଏ ମୋର ଭଉଣୀର ସୁଖଶାନ୍ତି ନଷ୍ଟ କରିଛି ତାକୁ ମୁଁ ପତିରୂପେ ଗ୍ରହଣ କରିବା ସମ୍ଭବ ହୋଇପାରେ କି ?

ତୁମର ମନ୍ଦ ଚିନ୍ତା କରିବା ପାଇଁ ମୋର ଯଥେଷ୍ଟ କାରଣ ଅଛି । ମୁଁ ଯାହା କହିଲି ତାହା ଖଣ୍ଡନ କରିପାରିବ କି ?"

ନିଜକୁ ଖୁବ୍ ସଯତ କରି ନେଇ ମିଃ ଡାରସି କହିଲେ, "ମୋର ବନ୍ଧୁଙ୍କୁ ତୁମ ଭଉଣୀଠାରୁ ଦୂରକୁ ନେଇଯାଇଥିବା କଥା ମୁଁ ସ୍ୱୀକାର କରୁଛି । ଏହା କରିପାରିଥିବାରୁ ମୁଁ ବରଂ ଆନନ୍ଦିତ । ତାଙ୍କର ଉପକାର କରିବାକୁ ଯାଇ ମୁଁ କଷ୍ଟ ସହୁଛି ।"

ଏଲିଜାବେଥ କହିଲେ, "କେବଳ ଏଇ ଗୋଟିକ ବିଷୟ ନୁହେଁ, ତୁମ ପ୍ରତି ମୋର ଘୃଣାର ଅନ୍ୟ କାରଣ ମଧ୍ୟ ଅଛି । ତୁମର ଚରିତ୍ର ଉପରେ ତାହା କେତେ ମାସ ତଳେ ମିଃ ଉଇକହାମ ମୋତେ କହିଥିଲେ । ସେ ବିଷୟରେ ତୁମର ବକ୍ତବ୍ୟ କଅଣ ?"

"ଓଃ, ସେ ଭଦ୍ରଲୋକଙ୍କ ବିଷୟରେ ତୁମର ଆଗ୍ରହ ଖୁବ୍ ବେଶି !"

"ତାଙ୍କର ଦୁର୍ଦ୍ଦଶା ଯିଏ ଜାଣିଥିବ ସେ ତାଙ୍କ ବିଷୟରେ ଆଗ୍ରହ ପ୍ରକାଶ କରିବା ସ୍ୱାଭାବିକ । ସେ ଦୁର୍ଦ୍ଦଶାର କାରଣ ହେଉଛ ତୁମେ ।"

"ତେବେ ମୋ ବିଷୟରେ ତୁମର ଧାରଣା ଏଇଆ ? ନିଜର ସ୍ପଷ୍ଟ ମତ ପ୍ରକାଶ କରିଥିବାରୁ ତୁମକୁ ଧନ୍ୟବାଦ । ସତକଥା କହି ତୁମର ଅଭିମାନକୁ ପଦାଘାତ କରିନଥିଲେ ଓ ଆଗରୁ ତୁମକୁ ପ୍ରସ୍ତାବ ଦେଇଥିଲେ ହୁଏତ ତୁମେ ମୋର ଏଇସବୁ ଦୋଷ ଦେଖି ପାରି ନଥାନ୍ତ । କିନ୍ତୁ କାହାରିକୁ ପ୍ରତାରଣା କରିବା ମୋର ପ୍ରକୃତି ନୁହେଁ । ମୁଁ ସ୍ପଷ୍ଟବାଦୀ । ମୁଁ ଯେଉଁ ମତ ପ୍ରକାଶ କରିଛି ସେଥିପାଇଁ ମୁଁ ଲଜ୍ଜିତ ବା ଦୁଃଖିତ ନୁହେଁ । ତୁମର ବଂଶ ଗୌରବ ନାହିଁ; ଏଥିରେ ମୁଁ ଆନନ୍ଦିତ ହୁଅନ୍ତି କିପରି ?"

ଏଲିଜାବେଥଙ୍କର କ୍ରୋଧ ବୃଦ୍ଧି ପାଉଥିଲା । ସେ ନିଜକୁ ସମ୍ଭାଳି ନେଇ କହିଲେ, "ମିଃ ଡାରସି, ତୁମେ ଯେପରି ଭାବରେ ବିବାହ ପ୍ରସ୍ତାବ ଉତ୍ଥାପନ କଲ, ସେଥିରେ ମୁଁ ଅପମାନିତ ବୋଲି ମନେକରିବା ତୁମର ଭ୍ରମ । ଅବଶ୍ୟ ଭଦ୍ରଭାବରେ ପ୍ରସ୍ତାବଟା ଆସିଥିଲେ ମୁଁ ମନାକରିଥାନ୍ତି; କିନ୍ତୁ ଦୁଃଖିତ ହୋଇଥାନ୍ତି । ଯେପରି ଭାବରେ ପ୍ରସ୍ତାବ ଆସିଥିଲେ ସୁଦ୍ଧା ମୁଁ ତାହା ଗ୍ରହଣ କରି ନଥାନ୍ତି ।"

ଡାର୍ସି ବିସ୍ମିତ ଓ ଅପମାନିତ ବୋଧ କଲେ । ସେ ଏଲିଜାବେଥଙ୍କୁ ଚାହିଁରହିଲେ ।

ଏଲିଜାବେଥ୍ କହିବାକୁ ଲାଗିଲେ, "ତୁମ ସହିତ ପ୍ରଥମ ସାକ୍ଷାତ ସମୟରୁ ତୁମର ଔଦ୍ଧତ୍ୟ, ତୁମର ଅଭିମାନ, ଅନ୍ୟମାନଙ୍କ ମନୋଭାବ ପ୍ରତି ତୁମର ଉଦାସୀନତା ଦେଖିଆସିଛୁ । କ୍ରମେ ପରବର୍ତ୍ତୀ ଘଟଣା ଫଳରେ ତୁମ ପ୍ରତି ମୋର ଘୋର ଘୃଣା ଜନ୍ମିଛି । ତୁମ ସହିତ ପରିଚୟର ମାସକ ଭିତରେ ମୁଁ ସ୍ଥିର କରିସାରିଥିଲି ଯେ ତୁମ ସହିତ ମୋର ବିବାହ ସମ୍ପୂର୍ଣ୍ଣ ଅସମ୍ଭବ ।"

"ଯଥେଷ୍ଟ କହିଛ । ମୁଁ ତୁମର ମନୋଭାବ ବୁଝିଛି । ତୁମର ଏତେ ସମୟ ନେଲି, କ୍ଷମା କରିବ । ଈଶ୍ୱର ତୁମର ମଙ୍ଗଳ କରନ୍ତୁ ।" ଏତିକି କହି ମିଃ ଡାର୍ସି ବାହାରିଗଲେ ।

ଏଲିଜାବେଥ୍‌ଙ୍କ ମନରେ ଗୋଟାଏ ଝଡ ବହୁଥିଲା । ସେ ବସିପଡ଼ି କାନ୍ଦିବାରେ ଲାଗିଲେ । ମିଃ ଡାରସି ନିଜେ ଆସି ତାଙ୍କୁ ବିବାହ ପ୍ରସ୍ତାବ ଦେବେ ଏପରି କଳ୍ପନା ସେ କେବେ କରିନଥିଲେ । ଯେଉଁ କାରଣରୁ ଜେନ୍ ସହିତ ମିଃ ବିଙ୍ଗ୍‌ଲେଙ୍କ ବିବାହ ପ୍ରସ୍ତାବକୁ ସେ ଭାଙ୍ଗିଥିଲେ, ସେହି କାରଣ ସତ୍ତ୍ୱେ ସେ କିପରି ନିଜେ ବିବାହ ପ୍ରସ୍ତାବ ଦେବାକୁ ଗଲେ ?

ସେ ଏହିପରି ଭାବୁଥିବା ସମୟରେ ଚାର୍ଲୋଟଙ୍କ ଆସିବା ଶବ୍ଦ ଶୁଣାଗଲା ।

## ମିଃ ଉଇକ୍‌ହାମଙ୍କ ପ୍ରକୃତ ପରିଚୟ

ଏହି ଘଟଣାର ପରଦିନ ସକାଳେ ଏଲିଜାବେଥ ଜଳଖିଆ ଖାଇସାରି ବୁଲିଯାଇ ପାର୍କରେ ପହଞ୍ଚିଲେ । ଏହି ସମୟରେ ସେ ପାର୍କରେ ଜଣେ ଲୋକକୁ ଦେଖିଲେ । କାଳେ ଲୋକଟି ମିଃ ଡାର୍ସି ହୋଇଥିବେ ଆଶଙ୍କା କରି ସେ ଫେରି ଆସିଲା ବେଳକୁ ଦେଖନ୍ତି, ମିଃ ଡାର୍ସି ତାଙ୍କ ଆଡ଼କୁ ଆସୁଛନ୍ତି । ସେ ପାର୍କର ଫାଟକପାଖରେ ହେଲାବେଳକୁ ମିଃ ଡାର୍ସି ଆଗେଇଆସି କହିଲେ, "ତୁମର ଭେଟ ପାଇବା ଆଶାରେ ଅନେକ ବେଳୁ ପାର୍କରେ ବୁଲୁଛି । ଦୟାକରି ଏ ଚିଠି ଖଣ୍ଡିକ ପଢ଼ିବ ।" ଏହା କହି ସେ ଖଣ୍ଡିଏ ଚିଠି ବଢ଼େଇ ଦେଇ ଚାଲିଗଲେ ।

ଏଲିଜାବେଥ୍ ଲଫାଫାଟି ଖୋଲିଲେ । ସେଥିରେ ଗୋଟିଏ ଦୀର୍ଘ ଚିଠି ଥିଲା । ସେ ପଢ଼ିବାକୁ ଲାଗିଲେ ।

"ତୁମ ମନରେ କଷ୍ଟଦେବା ମୋର ଆଦୌ ଇଚ୍ଛା ନୁହେଁ । ନିଜକୁ ହୀନ ମନେକରିବା ମଧ୍ୟ ମୋର ଇଚ୍ଛା ନୁହେଁ । ମୋର ଚରିତ୍ର ସମ୍ପର୍କରେ ଜଣାଇ ଦେବା ଏ ଚିଠିର ଉଦ୍ଦେଶ୍ୟ । ମୋ ପ୍ରତି ନ୍ୟାୟ ଦୃଷ୍ଟିରୁ ଏହାକୁ ମନଦେଇ ପଢ଼ିବ ବୋଲି ମୋର ଅନୁରୋଧ ।

କାଲି ରାତିରେ ତୁମେ ମୋ ବିଷୟରେ ଦୁଇଟି ଅଭିଯୋଗ କରିଥିଲ । ପ୍ରଥମ, ମୁଁ ତୁମ ଭଉଣୀ ଓ ମିଃ ବିଙ୍ଗ୍‌ଲେଙ୍କ ମଧ୍ୟରେ ଥିବା ସମ୍ବନ୍ଧକୁ ଛିନ୍ନ କରିଛି । ଦ୍ୱିତୀୟ, ମୁଁ ମିଃ ଉଇକ୍‌ହାମଙ୍କ ଆଶାକୁ ଧୂଳିସାତ୍ କରିଛି । ଏ ଚିଠି ପଢ଼ିବା ପରେ ମୋର ନିର୍ଦ୍ଦୋଷତା ଜାଣିପାରିବ ବୋଲି ମୋର ବିଶ୍ୱାସ ।

ହାର୍ଟଫୋର୍ଡ଼ଶାୟାରରେ ଅଳ୍ପ ଦିନ ରହିବା ପରେ ମୁଁ ବୁଝିପାରିଲି ଯେ ମିଃ ବିଙ୍ଗ୍‌ଲେ ତୁମ ଭଉଣୀ ଜେନ୍ ପ୍ରତି ଆକୃଷ୍ଟ । କିନ୍ତୁ ଘଟଣାଟା ଗୁରୁତ୍ୱପୂର୍ଣ୍ଣ ବୋଲି ଜାଣିଲି ନେଦରଫିଲ୍‌ଡ଼ର ନୃତ୍ୟ ଆସରରେ । ଏହା ପୂର୍ବରୁ ସେ ଅନେକ ଯୁବତୀଙ୍କୁ ଭଲପାଉଥିଲେ । ମୁଁ ତାଙ୍କ ଉପରେ ଦୃଷ୍ଟି ରଖିଲି । ଦେଖିଲି, ତୁମ ଭଉଣୀ ପ୍ରତି ତାଙ୍କର ଆକର୍ଷଣ ଅତି ଗଭୀର । ତୁମ ଭଉଣୀଙ୍କ ଉପରେ ମଧ୍ୟ ମୋର ଦୃଷ୍ଟି ଥିଲା । ବିଙ୍ଗ୍‌ଲେଙ୍କ ପ୍ରତି ତାଙ୍କର ବ୍ୟବହାର ସରଳ, ଆନନ୍ଦମୟ ହେଲେହେଁ ସେଥିରେ କୌଣସି ଗଭୀର ପ୍ରେମର ସୂଚନା ନଥିଲା । ମୁଁ ଯଦି ଏହି ସିଦ୍ଧାନ୍ତରେ ଭୁଲ କରିଥାଏଁ, ତେବେ ତୁମର ରାଗ କରିବାର କାରଣ ଯୁକ୍ତିଯୁକ୍ତ ହୋଇପାରେ ।

କେବଳ ତୁମର ଆଭିଜାତ୍ୟ ନାହିଁ ବୋଲି ଯେ ମୁଁ ଏ ବିବାହର ବିରୋଧୀ ଥିଲି, ତାହା ନୁହେଁ । ତୁମର ଆଭିଜାତ୍ୟର ଅଭାବ ହେତୁ ମୋର ବା ମୋର ବନ୍ଧୁ ମିଃ ବିଙ୍ଗ୍‌ଲେଙ୍କର କିଛି କ୍ଷତି ହେଉ ନଥିଲା । ତାହାଛଡ଼ା ଆଉ କେତେକ କାରଣ ଥିଲା । ସେଗୁଡ଼ିକ ସଂକ୍ଷେପରେ ଲେଖୁଛି ।

ତୁମ ମାଆଙ୍କର ଗୋଟିଏ ଭାଇ ମଫସଲ ଓକିଲ, ଆଉ ଗୋଟିଏ ଭାଇ ଦୋକାନଦାର । ଏଥିରେ ମଧ୍ୟ ବିଶେଷ ଆପତ୍ତିର କାରଣ ନଥିଲା । କିନ୍ତୁ ତୁମ ମାଆଙ୍କର ଭଦ୍ରତାର ଅଭାବ ଓ ତୁମର ଅନ୍ୟ ଭଉଣୀମାନଙ୍କ ବ୍ୟବହାର ଅସହ୍ୟ ଥିଲା । ଏହା କହି ତୁମକୁ କଷ୍ଟ ଦେଉଛି, ସେଥିପାଇଁ କ୍ଷମା ଦେବ । ମୁଁ ତୁମ

ପ୍ରତି ବା ତୁମ ଭଉଣୀ ପ୍ରତି ଏପରି ଦୋଷାରୋପ କରୁନାହିଁ । ଏପରି ସ୍ଥଳେ ଗୋଟାଏ ଅପ୍ରୀତିକର ବିବାହରୁ ମୋର ବନ୍ଧୁଙ୍କୁ ରକ୍ଷାକରିବା ମୋର କର୍ତ୍ତବ୍ୟ ବୋଲି ମନେକଲି ।

ନୃତ୍ୟ ଆସରର ପରଦିନ ମିଃ ବିଙ୍ଗ୍‌ଲେ ଲଣ୍ଡନ ଚାଲିଗଲେ । ମୁଁ ତାଙ୍କ ଭଉଣୀମାନଙ୍କ ସଙ୍ଗେ ବିଚାର କଲି ଓ ଆମେ ସମସ୍ତେ ଲଣ୍ଡନ ଗଲୁ । ତାଙ୍କର ପତ୍ନୀ ନିର୍ବାଚନର ପରିଣାମ କାହିଁକି ଭଲ ହେବ ନାହିଁ, ତାହା ତାଙ୍କୁ ବୁଝାଇଦେଲି । ସେ ମୋତେ ଖୁବ୍ ବିଶ୍ୱାସ କରନ୍ତି, ତେଣୁ ସେ ସହଜେ ନିଜର ଭ୍ରମ ବୁଝିପାରିଲେ । ଏଥିରେ ମୁଁ ଅନ୍ୟାୟ କରିଛି ବୋଲି ଭାବୁନାହିଁ ।

ଦ୍ୱିତୀୟ ଅଭିଯୋଗ ବିଷୟ କହିବାକୁ ଗଲେ ମୋର ପରିବାର ସହିତ ମିଃ ଉଇକ୍‌ହାମଙ୍କର ସମ୍ବନ୍ଧଟା ବୁଝାଇଦେବା ନିତାନ୍ତ ଦରକାର ।

ଉଇକ୍‌ହାମଙ୍କ ପିତା ଆମର ପେମ୍ବରଲି ଜମିଦାରୀ ବିଷୟ ବୁଝୁଥିଲେ । ମୋର ପିତା ତାଙ୍କ କାର୍ଯ୍ୟରେ ଖୁବ୍ ସନ୍ତୁଷ୍ଟ ଥିଲେ ଓ ଜର୍ଜ ଉଇକହାମଙ୍କୁ ଧର୍ମପୁତ୍ର ରୂପେ ଗ୍ରହଣ କରିଥିଲେ । ମୋର ପିତା ତାଙ୍କୁ ସ୍କୁଲରେ ଓ ପରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ପଢ଼ାଇଥିଲେ । ତାଙ୍କ ସାହାଯ୍ୟ ବିନା ଜର୍ଜ ମୂର୍ଖ ହୋଇ ରହିଥାନ୍ତେ ଏଥିରେ ସନ୍ଦେହ ନାହିଁ । ମୋର ପିତା ଜର୍ଜଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଭବିଷ୍ୟତରେ ଜର୍ଜ ଜଣେ ପାର୍ସନ ହେବେ ବୋଲି ସ୍ଥିର କରି ସେ ତାଙ୍କ ପାଇଁ କିଛି ସମ୍ପତ୍ତି ବ୍ୟବସ୍ଥା କରି ରଖିଥିଲେ ।

ପ୍ରାୟ ପାଞ୍ଚବର୍ଷ ତଳେ ମୋ ପିତାଙ୍କର ମୃତ୍ୟୁ ହେଲା । ତାଙ୍କ ଚରମ ପତ୍ରରେ ସେ ଉଲ୍ଲେଖ କରିଥିଲେ ଯେ ଜର୍ଜ ଉଇକ୍‌ହାମଙ୍କ ଜୀବିକାର୍ଜନରେ ମୁଁ ସାହାଯ୍ୟ କରିବି । ଯଦି ସେ ପାର୍ସନ ହୁଅନ୍ତି, ତେବେ ତାଙ୍କ ପାଇଁ ଉଦ୍ଦିଷ୍ଟ ସମ୍ପତ୍ତି ସହ ତାଙ୍କୁ ଏକ ହଜାର ପାଉଣ୍ଡ ଦେବି । ଏହା ପରେ ଉଇକହାମଙ୍କ ପିତାଙ୍କର ମୃତ୍ୟୁ ହେଲା । ପିତାଙ୍କ ମୃତ୍ୟୁର ମାତ୍ର ଛଅ ମାସ ପରେ ସେ ମୋତେ ଲେଖିଲେ ଯେ ପାର୍ସନ ହେବା ତାଙ୍କର ଇଚ୍ଛା ନୁହେଁ । "ମୋର ସେ ସମ୍ପତ୍ତି ଲୋଡ଼ା ନାହିଁ । ମୋତେ କିଛି ଟଙ୍କା ଦେଲେ ମୁଁ ଓକିଲାତି ପଢ଼ିବି ।" ତାଙ୍କ କଥାରେ ମୁଁ ବିଶ୍ୱାସ କଲି । ସେ ସମ୍ପତ୍ତି ବଦଳରେ ମୋଠାରୁ ତିନି ହଜାର ପାଉଣ୍ଡ ନେଇ ଓକିଲାତି ପଢ଼ିବାକୁ ଚଳେ ।

ଏହା ପରେ ତନ ବର୍ଷ ବିତିଗଲା । ତାଙ୍କର ଓକିଲାତି ପଢ଼ିବା କଥା ଏକବାରେ ମିଛ । ସେ ମଉଜରେ ଟଙ୍କାତକ ଉଡ଼ାଇଦେଇ କରଜରେ ବୁଡ଼ି ଯାଇଥିଲେ । ସେ ପୁଣି ପାର୍ସନ ହେବାର ଇଚ୍ଛା ପ୍ରକାଶ କରି ଉକ୍ତ ସମ୍ପତ୍ତି ପାଇବାକୁ ଚାହିଁଲେ । ମୁଁ ଏଥିରେ ରାଜି ହେଲି ନାହିଁ । ତାଙ୍କର ବାରମ୍ବାର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିବାରୁ ସେ ମୋ ଉପରେ ରାଗିଲେ । ମୋର ନିନ୍ଦା ଗାଇବୁଲିଲେ । ଆମ ଦୁହିଁଙ୍କ ଭିତରେ ସମ୍ବନ୍ଧ ତୁଟିଗଲା । କିନ୍ତୁ ଗଲା ଖରାଦିନେ ପୁଣି ସେ ମୋ ସହିତ ସମ୍ବନ୍ଧ ସ୍ଥାପନ କଲେ ।

ଏହିଠାରେ ଗୋଟିଏ ଗୁପ୍ତ କଥା କହିରଖିବା ଦରକାର । ଆଶାକରେ ତୁମେ ଏହାକୁ ଗୋପନୀୟ ରଖିବ ।

ମୋର ଭଉଣୀଟି ମୋଠାରୁ ଦଶବର୍ଷ ସାନ । ମୁଁ ଓ କର୍ଣ୍ଣେଲ ଫିଜ-ଉଇଲିଅମ ତାର ଅଭିଭାବକ । ଗଲାବର୍ଷ ସେ ସ୍କୁଲପଢ଼ା ଛାଡ଼ି ଲଣ୍ଡନରେ ମିସେସ୍ ୟଙ୍ଗ୍ ବୋଲି ଜଣଙ୍କ ତତ୍ତ୍ୱାବଧାନରେ ସେଠାରେ ଥିଲା । ଗଲା ଖରାଦିନେ ସେ ମିସେସ୍ ୟଙ୍ଗ୍‌ଙ୍କ ସହିତ ରାମ୍‌ସଗେଟକୁ ଯାଇଥିଲା । ମି. ଉଇକ୍‌ହାମ ମଧ୍ୟ ସେଠାକୁ ଯାଇଥିଲେ । ଏଥି ପୂର୍ବରୁ ମିସେସ୍ ୟଙ୍ଗ୍ ଓ ଉଇକ୍‌ହାମଙ୍କ ଭିତରେ ବନ୍ଧୁତା ଥିଲା ଓ ଗୋଟାଏ ଉଦ୍ଦେଶ୍ୟ ରଖି ଉଇକ୍‌ହାମ ସେଠାକୁ ଯାଇଥିଲେ । ମୋ ସାନଭଉଣୀ (ଜର୍ଜିଆନା) ସହଜରେ ଉଇକ୍‌ହାମ୍‌ଙ୍କ ଫାଶରେ ପଡ଼ିଗଲା । ଏଥିରେ ମିସେସ୍ ୟଙ୍ଗ୍ ସାହାଯ୍ୟ କଲେ । ଉଇକହାମ୍ ତାକୁ ସଙ୍ଗରେ ନେଇ ସ୍କଟଲଣ୍ଡ ଯିବେ ଓ ସେହିଠାରେ ଗୋପନରେ ଦୁହିଁଙ୍କର ବିବାହ ହେବ ବୋଲି ସ୍ଥିରହେଲା ।

ସେତେବେଳକୁ ଜର୍ଜିଆନାର ବୟସ ମୋଟେ ପନ୍ଦର ବର୍ଷ । ଭାଗ୍ୟକୁ ସେ ମୋତେ ଏ ବିଷୟର କଥା କହିଦେଲା । ସେ ଦୁହେଁ ପଳାଇବା ପୂର୍ବରୁ ମୁଁ ପହଞ୍ଚି ଭଉଣୀକୁ ରକ୍ଷା କଲି । ସେ ମୋତେ ପିତା ପରି ମାନୁଥିଲା । ମୋ କଥା ମାନି ସେ ରହିଲା, ନୋହିଲେ ଆମ କୁଳକୁ ଘୋର ଅପନିନ୍ଦା ହୋଇଥାନ୍ତା ।

ଉଇକ୍‌ହାମ ପଳାଇଗଲେ । ସେ ଯେ ମୋ ଭଉଣୀକୁ ଭଲପାଇ ବିବାହ କରିବାକୁ ଚାହୁଁଥିଲେ ତାହା ନୁହେଁ । ସେ ଚାହୁଁଥିଲେ ତାର ସମ୍ପତ୍ତି । ବୋଧହୁଏ, ମୋ ଉପରେ ପ୍ରତିହିଂସା ନେବା ତାଙ୍କର ଅନ୍ୟ ଉଦ୍ଦେଶ୍ୟ ଥିଲା । ମିସେସ୍ ୟଙ୍ଗ୍‌ଙ୍କୁ ବିଦାୟଦେଲି ।

ମୋ କଥା ଯଦି ବିଶ୍ୱାସ କର ତେବେ ବୁଝିପାରିବ ମୁଁ ଉଇକ୍‌ହାମଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର କରିନାହିଁ । ସେ କପଟ ତୁମକୁ ଠକିଲେ, ମୁଁ ଜାଣେ ନାହିଁ । କିନ୍ତୁ ତୁମେ ଆମ ଦୁହିଁଙ୍କର ସମ୍ବନ୍ଧ ବିଷୟରେ କିଛି ଜାଣି ନ ଥିବାରୁ ତାଙ୍କ କଥାରେ ଭୁଲିଯାଇଥିବା ବିଚିତ୍ର ନୁହେଁ ।

କର୍ଣ୍ଣେଲ ଫିଜଉଇଲିଅମଙ୍କୁ ପଚାରିଲେ ମୋ କଥାର ସତ୍ୟତା ବୁଝି-ପାରିବ । ଈଶ୍ୱର ତୁମକୁ ଆଶୀର୍ବାଦ କରନ୍ତୁ ।

ତୁମର

ଏଫ୍‌ ଡାର୍‌ସି ।

## ଏଲିଜାବେଥଙ୍କ ମତରେ ମିଃ ଡାର୍‌ସି ଓ ମିଃ ଉଇକ୍‌ହାମ

ଏଲିଜାବେଥ ଚିଠିଟି ପଢ଼ିବା ସଙ୍ଗେ ସଙ୍ଗେ ଚିନ୍ତା କରିବାକୁ ଲାଗିଲେ । ଜେନ୍‌ର ବିବାହ ପ୍ରସ୍ତାବ ଭାଙ୍ଗିବାପାଇଁ ଡାର୍‌ସି ଯେଉଁ କାରଣ ଦେଇଥିଲେ, ତାହା ଭାବି ତାଙ୍କର ରାଗହେଲା । ନିଜର କାର୍ଯ୍ୟପାଇଁ ଡାର୍‌ସି ଚିଠିରେ ଦୁଃଖ ପ୍ରକାଶ କରି ନଥିଲେ କି କ୍ଷମା ମାଗି ନ ଥିଲେ । ଚିଠିଟି ଯାକ ନିଜର ଔଦ୍ଧତ୍ୟ ଓ ବଡ଼ିମାରେ ପୂର୍ଣ୍ଣ । ଏଥିରେ ଏଲିଜାବେଥଙ୍କର ରାଗ ଆସିବା ସ୍ୱାଭାବିକ ।

ମି. ଉଇକ୍‌ହାମଙ୍କ ବିଷୟରେ ଯାହା ଲେଖାଥିଲା, ତାକୁ ଏଲିଜାବେଥ ବିଶ୍ୱାସ କରିପାରୁ ନ ଥିଲେ । ତାଙ୍କର ଧାରଣା, ଡାର୍‌ସି ଉଇକ୍‌ହାମଙ୍କ ବିଷୟରେ ଯାହାସବୁ ଲେଖିଛନ୍ତି ସେ ସବୁ ମିଥ୍ୟା । ସେ ଚିଠିକୁ ଥରେ ପଢ଼ିସାରି ରଖିଦେଲେ ।

କିନ୍ତୁ ତାଙ୍କ ମନରେ ଶାନ୍ତି ଆସିଲା ନାହିଁ । ସେ ଧୀର ସ୍ଥିର ଭାବରେ ଆଉ ଥରେ ସେହି ଚିଠି ପଢ଼ିଲେ । ସେ ଭାବିଲେ—ଡାର୍‌ସିଙ୍କ ପକ୍ଷରୁ ହେଉ ବା ଉଇକ୍‌ହାମଙ୍କ ପକ୍ଷରୁ ହେଉ, ପ୍ରତାରଣା ହୋଇଅଛି । ଅନ୍ୟ କେହି ଚିଠି ପଢ଼ିଲେ ମନେକରିବ ଡାର୍‌ସି ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ଏଲିଜାବେଥ ଉଇକ୍‌ହାମଙ୍କର କୌଣସି ବିଶେଷ ସାଧୁତା ବା ଉଦାରତା ମନେପକାଇବାକୁ ଚେଷ୍ଟା କରି ବିଫଳ ହେଲେ । ମିସ୍ ଡାର୍‌ସିଙ୍କ ସହିତ ଉଇକ୍‌ହାମଙ୍କ ବ୍ୟବହାର

ବିଷୟରେ ଯାହା ଲେଖାଥିଲ, ତାହା କେତେକ ପରିମାଣରେ କର୍ଣ୍ଣେଲ ଫିଜଉଇଲିଅମଙ୍କ କାର୍ଯ୍ୟ ଦ୍ୱାରା ପ୍ରମାଣିତ ହୋଇଥିଲ ।

ଏଲିଜାବେଥ ଉଇକ୍‌ହାମଙ୍କ ସହିତ ତାଙ୍କ ପ୍ରଥମ ସାକ୍ଷାତ ଘଟନା ମନେ ପକାଇଲେ । ସେଦିନ ଉଇକ୍‌ହାମ ତାଙ୍କ ସହିତ ଯେପରି କଥାବାର୍ତ୍ତା କରିଥିଲେ ତାହା ସୁରୁଚିର ପରିଚାୟକ ନୁହେଁ ବୋଲି ମନେହେଲ । ତାଙ୍କର ମନେ ପଡ଼ିଲ—ଉଇକ୍‌ହାମ ଗର୍ବ ଦେଖାଇ କହୁଥିଲେ, 'ମି. ଡାର୍ସିଙ୍କୁ ସାକ୍ଷାତ କରିବାକୁ ମୋର ଭୟ ନାହିଁ', କିନ୍ତୁ ଆଗ ଯେ ନେଦରଫିଲ୍ଡ଼ ବଲ୍‌ନୃତ୍ୟ ଛାଡ଼ି ପଳାଇଯାଇଥିଲେ । ଏଲିଜାବେଥ ଭାବିଲେ—ଉଇକ୍‌ହାମ ମିସ୍ କିଙ୍ଗଙ୍କୁ ଏତେ ଆଦର ଦେଖାଇବାର ମୂଳ କାରଣ ହେଲ, ମିସ୍ କିଙ୍ଗଙ୍କ ଧନ ଉପରେ ଲୋଭ । ନା, ଉଇକ୍‌ହାମ କଦାପି ଭଲଲୋକ ହୋଇ ନଥିବେ । ମି· ଡାର୍ସି ଉଦ୍ଧତ, ଗର୍ବୀ ସତ, କିନ୍ତୁ ତାଙ୍କର ଚରିତ୍ରରେ କିଛି ଦୋଷ ଦେଖାଯାଇ ନାହିଁ । ତାଙ୍କ ବନ୍ଧୁମାନେ ତାଙ୍କୁ ପ୍ରଶଂସା କରନ୍ତି । ସେ ନିଜ ଭଉଣୀକୁ ଖୁବ୍ ସ୍ନେହ କରନ୍ତି । ଉଇକ୍‌ହାମ ଡାର୍ସିଙ୍କୁ ଖୁବ୍ ନିନ୍ଦା କରନ୍ତି; କିନ୍ତୁ ସେ ଏଡ଼େ ଖରାପ ଲୋକ ହୋଇଥିଲେ ମି· ବିଙ୍ଗଲେଙ୍କ ଭଳି ଲୋକ ତାଙ୍କର ଅନ୍ତରଙ୍ଗ ବନ୍ଧୁ ହୋଇ ପାରି ନଥାନ୍ତେ ।

ଏଲିଜାବେଥ ନିଜର ବିଚାରବୁଦ୍ଧିକୁ ନିନ୍ଦା କରିବାକୁ ଲଗିଲେ । ସେ ଭାବିଲେ—ମୁଁ ଉଇକ୍‌ହାମଙ୍କ କଥାରେ ଭାସିଯାଇ ତାଙ୍କୁ ଜଣେ ସୁଯୋଗ୍ୟ ଲୋକ ବୋଲି ମନେକରିଛି; ଡାର୍ସିଙ୍କ ଉଦାସିନତା ଦେଖି ନିଜକୁ ଅପମାନିତ ମନେକରିଛି, ତାଙ୍କୁ ଜଣେ ଖରାପ ଲୋକ ବୋଲି ଧରିନେଇଛି । ମୋର ଏପରି କରିବା ଘୋର ଅନ୍ୟାୟ ।

କିଛି ସମୟ ପରେ ସେ ପୁଣି ଥରେ ଚିଠି ଖଣ୍ଡିକ ବାହାର କରି ପଢ଼ିଲେ । ତାଙ୍କ ପରିବାର ବିଷୟରେ ଯାହା ଲେଖାଥିଲ ତାହା ପଢ଼ି ସେ ଲଜ୍ଜା ଅନୁଭବ କଲେ । ସେ ଭାବିଲେ, ଡାର୍ସି ଯାହା ଲେଖିଛନ୍ତି ତାହା ମିଥ୍ୟା ନୁହେଁ । କିନ୍ତୁ ତାଙ୍କ ବଂଶମର୍ଯ୍ୟାଦା ଯେଉଁ ସ୍ତରରେ, ତାହା ବଦଳି ଯାଇ ନପାରେ । ମି· ବେନେଟ୍ ସାନଝିଅମାନଙ୍କର ବଡ଼ଲୋକ ବ୍ୟବହାର ଦେଖି ହସରେ ଉଡ଼ାଇ ଦେଉଥିଲେ । ମିସେସ୍ ବେନେଟ୍ ଝିଅମାନଙ୍କର ଦୋଷ ଦେଖିବାକୁ ଅକ୍ଷମ ଥିଲେ । ଏଲିଜାବେଥ ଓ ଜେନ୍ ଅନ୍ୟ

ଭଉଣୀମାନଙ୍କୁ ଜବରନ୍ତ କରିବାକୁ ଚେଷ୍ଟା କରୁଥିଲେ; କିନ୍ତୁ ମାଆଙ୍କ ମୂହଁ ପାଇ ସେମାନେ ଭଲ ହୋଇ ପାରି ନ ଥିଲେ । ମେରିଟନରେ ଯେ କୌଣସି ଅଫିସର ସହିତ ହସଟକୌତୁକ କରିବାକୁ ସେମାନେ କୁଣ୍ଠିତ ନଥିଲେ ।

ଏହି ସବୁ କଥା ଚିନ୍ତା କରି କରି ଏଲିଜାବେଥ ଘରକୁ ଫେରିଆସିଲେ ।

## ଦୁଇଭଉଣୀଙ୍କ ବିଚାର

ଏଲିଜାବେଥ ଓ ମେରି ଘରକୁ ଫେରି ଯିବା ପାଇଁ ଲିଙ୍ଗବୋର୍ଣ୍ଣ ଅଭିମୁଖରେ ବାହାରିଲେ । ଘୋଡ଼ାଗାଡ଼ିରେ ଉଠିବା ପୂର୍ବରୁ ଏଲିଜାବେଥ ଓ ସ୍କର୍ଲୋଟ ପରସ୍ପରଠାରୁ ବିଦାୟ ନେଲେ । ମିଃ କଲିନ୍ସ ସେ ଦୁହିଁଙ୍କୁ ଗାଡ଼ିରେ ଉଠିବାରେ ସାହାଯ୍ୟ କଲେ । ଗାଡ଼ି ଭିତରେ ଦୁଇଭଉଣୀଙ୍କ ଭିତରେ ନାନାଜନର ଅନୁଭୂତି ବିଷୟରେ ଗଳ୍ପ ଚାଲିଲା । କେତେ ଘଣ୍ଟା ପରେ ସେମାନେ ମି· ଗାର୍ଡ଼ି-ନରଙ୍କ ଘରେ ପହଞ୍ଚିଲେ । ସେଠାରେ କେତେଟି ଦିନ କଟାଇ ଏଲିଜାବେଥ ଓ ମେରି ଜେନଙ୍କୁ ସଙ୍ଗରେ ଘେନି ଲିଙ୍ଗବୋର୍ଣ୍ଣର ନିଜ ଘରେ ପହଞ୍ଚିଲେ । ଏଠାରେ ଏଲିଜାବେଥ ଡାର୍‌ସିଙ୍କ ବିଷୟରେ ଯାହା ଜାଣିଥିଲେ ତାହା ଜେନ୍‌ଙ୍କୁ ଜଣାଇ-ଦେଲେ । ମି· ଉଇକ୍‌ହାମଙ୍କ କଥା ମଧ୍ୟ ପଡ଼ିଲା । ଡାର୍‌ସିଙ୍କ ଚିଠିରେ ଉଇକହାମଙ୍କ ବିଷୟରେ ଯାହା ଲେଖାଥିଲା, ତାହା ଶୁଣି ଜେନ୍ ସ୍ତମ୍ଭୀଭୂତ ହୋଇଗଲେ । କିନ୍ତୁ ସେ ଏହାକୁ ପୁରା ବିଶ୍ୱାସ କରିପାରିଲେ ନାହିଁ ।

ଏଲିଜାବେଥ ଜେନଙ୍କୁ କହିଲେ, "ଦୁହେଁଯାକ କଦାପି ଭଲ ହୋଇ ନପାରନ୍ତି; ଜଣେ ନିଶ୍ଚୟ ଖରାପ । ତେଣୁ ତୁମ ପକ୍ଷରେ ଦୁହିଁଙ୍କ ଭିତରୁ ଜଣକୁ ବାଛି ନେବାକୁ ହେବ ।" ଜେନ୍ ଉଇକହାମ୍‌ଙ୍କର ଗୁଣ ବାଛୁନହେଲେ ।

ଏଲିଜାବେଥ କହିଲେ, "ଏ ଦୁହିଁଙ୍କର ଶିକ୍ଷାରେ କିଛି ଦୀପ୍ତି ରହିଯାଇଛି । ଜଣକଠାରେ ଭଲ ଗୁଣଗୁଡ଼ିକ ଅଛି । ଅନ୍ୟ ଜଣକଠାରେ ସେହିସବୁ ଗୁଣର ଛଳନା ମାତ୍ର ଅଛି ।" ଏଲିଜାବେଥ ଡାର୍‌ସିଙ୍କୁ ନିତାନ୍ତ ମନ୍ଦ ଓ ଉଇକ୍‌ହାମଙ୍କୁ ଅତି ଭଲ ବୋଲି ପ୍ରଥମେ ବିଗ୍ଭରିଥିବାରୁ ଅନୁତାପ ପ୍ରକାଶ କଲେ ।

ମିସ୍ ଡାର୍‌ସିଙ୍କ ବିଷୟରେ ଯାହା ଚିଠିରେ ଥିଲା, ତାହା ଗୋପନ ରଖିବାପାଇଁ ମିଃ ଡାର୍‌ସି ଅନୁରୋଧ କରିଥିଲେ । ତେଣୁ ଦୁଇଭଉଣୀ ଏ ସବୁ ବ୍ୟାପାର କାହାରି ନିକଟରେ ପ୍ରକାଶ କରିବେ ନାହିଁ ବୋଲି ସ୍ଥିର କଲେ ।

ବିଶେଷତଃ ଉଇକ୍‌ହାମଙ୍କ ଦୁର୍ନାମ ରଟନା କରି କିଛି ଲାଭ ନାହିଁ । ଆଉ କେତେଟା ଦିନରେ ସେ ଭୁଲିଯିବାର କଥା ।

ପରେ ଗୋଟିଏ ସପ୍ତାହ କଟିଗଲା । ମେରିଟନରେ ଥିବା ସୈନ୍ୟଦଳ ବ୍ରାଇଟନ ଚାଲିଯିବେ ବୋଲି ଶୁଣାଗଲା । ଏହି ସମ୍ବାଦରେ ନିକଟବର୍ତ୍ତୀ ଗ୍ରାମମାନଙ୍କର ଯୁବତୀମାନେ ଦୁଃଖିତ ହେଲେ । ଜେନ୍, ମେରି ଓ ଏଲିଜାବେଥ ଏହି ସମ୍ବାଦରେ ଆଦୌ ବିଚଳିତ ହେଲେ ନାହିଁ । କିନ୍ତୁ କିଟି ଓ ଲିଡ଼ିଆଙ୍କର ଦୁଃଖର ସୀମା ରହିଲା ନାହିଁ । ସେ ଦୁହେଁ ଅନ୍ୟ ଭଉଣୀମାନଙ୍କର ଉଦାସୀନତା ଦେଖି ସେମାନଙ୍କ ଉପରେ ବିରକ୍ତ ହେବାକୁ ଲାଗିଲେ ।

ମିସେସ୍ ବେନେଟ୍ ସବା ସାନ ଝିଅ ଦୁଇଟିଙ୍କ ଦୁଃଖରେ ଦୁଃଖ ପ୍ରକାଶ କଲେ । ବ୍ରାଇଟନକୁ ଯାଇପାରିଲେ ଝିଅ ଦୁହେଁ ସାମରିକ କର୍ମଚାରୀଙ୍କ ସାହାଯ୍ୟ ପାଇପାରିବେ ବୋଲି ସେ କହିଲେ । କିନ୍ତୁ ପିତା ଏଥିରେ ସ୍ୱୀକୃତ ହେବେ ନାହିଁ, ଏହା ସେମାନଙ୍କୁ ଜଣାଥିଲା ।

ସେ ଦୁହିଁଙ୍କର ମନୋଭାବ ଜାଣିପାରି ଏଲିଜାବେଥ ଲଜ୍ଜିତ ହେଲେ । ବେନେଟ୍ ପରିବାର ବିଷୟରେ ଡାର୍ସି ଯାହା ଲେଖିଥିଲେ ତାହା ଏଲିଜାବେଥଙ୍କର ମନେପଡ଼ିଲା ।

ଏହି ସମୟରେ ଲିଡ଼ିଆଙ୍କୁ ଗୋଟାଏ ସୁଯୋଗ ମିଳିଗଲା । ସୈନ୍ୟ ଦଳରେ ମି: ଫର୍ଷ୍ଟର ବୋଲି ଜଣେ କର୍ଣ୍ଣେଲ ଥିଲେ । ତାଙ୍କର ନବବିବାହିତା ସ୍ତ୍ରୀ ଲିଡ଼ିଆଙ୍କୁ ବ୍ରାଇଟନ ଯିବାପାଇଁ ନିମନ୍ତ୍ରଣ କଲେ । ଲିଡ଼ିଆର ଆନନ୍ଦ କହିଲେ ନସରେ । ମିସେସ୍ ବେନେଟ୍ ମଧ୍ୟ ତାର ଏହି ସୌଭାଗ୍ୟରେ ଆନନ୍ଦ ପ୍ରକାଶ କଲେ ।

ଏଲିଜାବେଥ ଏସବୁ ଦେଖି ବାପାଙ୍କୁ କହିଲେ, "ବାପା, ଲିଡ଼ିଆର ସ୍ୱଭାବ ଦେଖ । ବ୍ରାଇଟନରେ ଜଣେ କର୍ଣ୍ଣେଲଙ୍କ ସ୍ତ୍ରୀ ତାକୁ ନିମନ୍ତ୍ରଣ କରିଛନ୍ତି । ସେ ସ୍ତ୍ରୀଲୋକଟିର ଆଚରଣ ଭଲ ନୁହେଁ । ସେଠାକୁ ଯିବାଦ୍ୱାରା ଲିଡ଼ିଆର ବଦ୍‌ନାମ ହେବ ।" ମି: ବେନେଟ୍ ଉତ୍ତରକଲେ, "ନିଜକୁ ଦେଖାଇହେବା ହେଉଛି ଲିଡ଼ିଆର ପ୍ରକୃତି । ସେ ବ୍ରାଇଟନ ଗଲେ ଖୁସି ହେବ । ସେଥିପାଇଁ ଆମର ଖର୍ଚ୍ଚ ପଡ଼ିବ ନାହିଁ କି କିଛି ଅସୁବିଧା ହେବନାହିଁ ।"

ଏଲିଜାବେଥ—ବାପା, ଲିଡ଼ିଆର ଆଚରଣରେ ଆମର କି କ୍ଷତି ହୋଇଛି ଜାଣିଥିଲେ ତୁମେ ତାକୁ ବ୍ରାଇଟନ ଯିବାପାଇଁ ଅନୁମତି ଦଅନ୍ତ ନାହିଁ । ତାକୁ ତୁମେ ଏତିକିବେଳୁ ନଜର ନକଲେ ପରେ ପାରିବେ ନାହିଁ । ମାତ୍ର ଷୋଳବର୍ଷ ବୟସରେ ସେ ଯୁବକମାନଙ୍କ ସଙ୍ଗେ ଯେପରି ଖେଳ କୌତୁକରେ ମିଶୁଛି, ସେଥିରେ ଆମ ପରିବାର ଉପହସିତ ହେବେ । କିଟି ମଧ୍ୟ ଲିଡ଼ିଆ ପରି । ଦୁହିଁଙ୍କି ଦୁହେଁ ଗର୍ବୀ, ମୂର୍ଖ, ଅଳସୁଆ ଓ ନିତାନ୍ତ ଅସଂଯତ । ସେ ଦୁହିଁଙ୍କ ଯୋଗେ ଆମେମାନେ ମଧ୍ୟ ନିନ୍ଦା ପାଇବା ।"

ମି: ବେନେଟ କହିଲେ, "ଝିଅ, ତୁ ଏଥିପାଇଁ ଦୁଃଖ କରନା । ତୁ ଓ ଜେନ୍ ଯେଉଁଠାକୁ ଯିବ ସେଠାରେ ପ୍ରଶଂସା ପାଇବ । ତୁମର ଦୁଇଟା ଖରାପ ଭଉଣୀ ଅଛନ୍ତି ବୋଲି କେହି ତୁମମାନଙ୍କର ନିନ୍ଦା କରିବେ ନାହିଁ । ଲିଡ଼ିଆ ବ୍ରାଇଟନକୁ ନଗଲେ ଘରେ ଶାନ୍ତି ରହିବ ନାହିଁ । ସେ ଯାଉ । କର୍ଣ୍ଣେଲ ଫର୍ଷ୍ଟର ଜଣେ ବିଚାରବନ୍ତ ଲୋକ । ସେ ଲିଡ଼ିଆକୁ ବିପଦରେ ପଡ଼ିବାକୁ ଦେବେ ନାହିଁ । ଆଉ ଗୋଟାଏ କଥା । ଏଠି ଲିଡ଼ିଆ ନିଜକୁ ବଡ଼ ମନେ କରୁଛି; କିନ୍ତୁ ବ୍ରାଇଟନରେ ତାକୁ କେହି ପଚାରିବେ ନାହିଁ । ସେଠାରେ ଲିଡ଼ିଆଠାରୁ ଅନେକ ସୁନ୍ଦରୀ, ଅନେକ ଗୁଣବତୀ ସ୍ତ୍ରୀ ଲୋକଙ୍କର ଅଭାବ ନାହିଁ । ହୁଏତ ସେଠାରେ ଲିଡ଼ିଆ ନିଜର କ୍ଷୁଦ୍ରତ୍ୱ ଜାଣିପାରିବ ।"

ଅଗତ୍ୟା ଏଲିଜାବେଥ ଚୁପ୍ ହୋଇ ରହିଲେ । ସୈନ୍ୟଦଳ ସହିତ ଲିଡ଼ିଆ ଯିବା ପୂର୍ବରୁ ଏଲିଜାବେଥ ଉଇକ୍‌ହାମଙ୍କୁ ଦେଖିଲେ । କଥାବାର୍ତ୍ତା ପ୍ରସଙ୍ଗରେ ଏଲିଜାବେଥ କହିଲେ ଯେ କର୍ଣ୍ଣେଲ ଫିଜ୍‌ଉଇଲିୟମ ଓ ମି. ଡାର୍‌ସି ରୋଜିଙ୍ଗସ୍‌କୁ ଯାଇଥିଲେ । ଏଲିଜାବେଥ ପଚାରିଲେ, "ତୁମେ ଫିଜ୍ ଉଇଲିୟମଙ୍କୁ ଚିହ୍ନ ?"

ବିସ୍ମିତ ହୋଇ ଉଇକ୍‌ହାମ କହିଲେ, "ଆଗେ ଆମ ଦୁହିଁଙ୍କର ବରାବର ଦେଖାହେଉଥିଲା । ତୁମେ ତାଙ୍କୁ କିପରି ଭଲପାଅ ?" ଏଲିଜାବେଥ ଉତ୍ତର କଲେ, "ମୁଁ ତାଙ୍କୁ ଖୁବ ଭଲପାଏ ।" ଏଲିଜାବେଥ ଓ ଉଇକ୍‌ହାମ୍ ଭିତରେ ମି. ଡାରସିଙ୍କ ବିଷୟରେ ଆଲୋଚନା ହେଲା । ଏଲିଜାବେଥଙ୍କର ଯୁକ୍ତି ହେଲା, ଡାର୍‌ସିଙ୍କ ନିକଟସମ୍ପର୍କରେ ଆସିଲେ ତାଙ୍କର ପ୍ରକୃତ ଚରିତ୍ର ଜଣା ଯିବ ।

ଶେଷରେ ଉଇକ୍‌ହାମ କହିଲେ, "ମିଃ ଡାର୍‌ସିଙ୍କ ପ୍ରତି ମୋର ମନୋଭାବ ତୁମର ଅଜଣା ନାହିଁ । ସେ ମିସ୍ ଡିବ୍‌ର୍ଗେଙ୍କୁ ବିବାହ କରିବା ଚେଷ୍ଟାରେ ଅଛନ୍ତି । ସେଥିପାଇଁ ସେ ବାହାରେ ଭଦ୍ରତା ଦେଖାଉଥିବେ ।"

ଏଲିଜାବେଥ ଓ ଉଇକ୍‌ହାମ୍ ପରସ୍ପରଠାରୁ ବିଦାୟ ନେଲେ । ଦୁହିଁଙ୍କର ମନୋଭାବ ହେଲା—ଆଉ ଦେଖା ନହୁଅନ୍ତା କି !

## ପେମ୍ବର୍ଲିରେ ଏଲିଜାବେଥ

ଏଲିଜାବେଥ ଓ ମିସେସ ଗାର୍ଡ଼ିନର ଡର୍ବିଶାୟାରକୁ ଯିବା କଥା ହେଲା । ଡର୍ବିଶାୟାରରେ ଦର୍ଶନୀୟ ବସ୍ତୁ ଯଥେଷ୍ଟ । ସବୁ ବୁଲି ବୁଲି ଦେଖିଲେ ତିନି ସପ୍ତାହ କଟିଯିବ । ମିସେସ୍ ଗାର୍ଡ଼ିନରଙ୍କ ଇଚ୍ଛା, ସେ ଲମ୍‌ଟନ ସହର ଦେଖିବେ । ଏହି ସହରରେ ସେ ପୂର୍ବରୁ କେତେ ବର୍ଷ କଟାଇଥିଲେ ।

ଏଲିଜାବେଥଙ୍କର ବଡ଼ ଆଶା ଥିଲା ଡର୍ବିଶାୟାରର ହ୍ରଦଗୁଡ଼ିକ ଦେଖିବେ । କିନ୍ତୁ ଏଥିରେ ନିରାଶ ହେଲେ । କିନ୍ତୁ ସେ ଯେତିକି ଦେଖିଲେ ସେତିକରେ ସନ୍ତୁଷ୍ଟ ରହିଲେ ।

ଡର୍ବିଶାୟାରର ନାଁ ପଡ଼ିଲେ ଏଲିଜାବେଥଙ୍କର ମନେପଡ଼ିଯାଏ ପେମ୍ବର୍ଲିର ଜମିଦାରୀ ଓ ତାର ଜମିଦାରଙ୍କ କଥା । ସେ ଭାବିଲେ, ଏଠାରୁ କେତେକ ସ୍ମାରକ ବସ୍ତୁ ନେଇଯିବେ ।

ଚାରି ସପ୍ତାହ ପରେ ମିଃ ଗାର୍ଡ଼ିନର, ମିସେସ୍ ଗାର୍ଡ଼ିନର ଓ ସେମାନଙ୍କର ଚାରୋଟି ପିଲା ଲଙ୍ଗବୋର୍ଣ୍ଣରେ ପହଞ୍ଚିଲେ । ପିଲାଗୁଡ଼ିକ ଜେନ୍‌ଙ୍କ ପାଖରେ ରହିବା କଥା ହୋଇଥିଲା ।।

ରାତିଟି ମିଃ ବେନେଟଙ୍କ ଘରେ କଟାଇ ପରଦିନ ସକାଳୁ ଗାର୍ଡ଼ିନର ଦମ୍ପତି ଏଲିଜାବେଥଙ୍କ ସହିତ ବାହାରିଲେ । ତିନିଜଣ ଯାକ ସୁସ୍ଥ ସବଳ, କାହାରି ବୁଦ୍ଧିର ଅଭାବ ନାହିଁ । ତେଣୁ ସେମାନେ ଆନନ୍ଦିତ ଥିଲେ । ସେମାନେ ଲମ୍‌ଟନ ସହର ଆଡ଼କୁ ଚାଲିଲେ । ଏଲିଜାବେଥ ମିସେସ୍ ଗାର୍ଡ଼ିନରଙ୍କଠାରୁ ଜାଣିଲେ ଯେ ଲମ୍‌ଟନଠାରୁ ପେମ୍ବର୍ଲି ପାଞ୍ଚ ମାଇଲ ବାଟ । ସେମାନେ ଯେଉଁ ବାଟେ ଯାଉଥିଲେ ସେଠାରୁ ବାଟ ଭାଙ୍ଗି ମାଇଲଏ ମାତ୍ର ଯିବାକୁ ହେବ । ମିସେସ୍

ଗାର୍ଡ଼ିନର ମଧ୍ୟ ପେମ୍‌ବର୍ଲି ଦେଖିବା ଇଚ୍ଛା ପ୍ରକାଶ କଲେ । ସେ କହିଲେ, "ଏଲିଜାବେଥ୍, ଜାଗାଟା ଦେଖିବା କଥା । ଉଇକ୍‌ହାମ୍ ତାଙ୍କ ଯୌବନ-କାଳ ଏଇଠାରେ କଟାଇଦେଇଥିଲେ ।"

ଏଲିଜାବେଥ ଏହା ଶୁଣି ଅସ୍ୱସ୍ତି ଅନୁଭବ କଲେ । ହୁଏତ ସେଠାରେ ମିଃ ଡାର୍‌ସିଙ୍କ ସଙ୍ଗେ ଦେଖା ହୋଇଯାଇପାରେ । ମିସେସ୍ ଗାର୍ଡ଼ିନର ପେମ୍‌ବର୍ଲି କୋଠାର ବହୁତ ପ୍ରଶଂସା କଲେ । ଶେଷରେ ଏଲିଜାବେଥ କହିଲେ, "ସେଠାରେ ଯେବେ ଘରର କେହି ନଥିବେ, ତେବେ ମୁଁ ଯିବି ।"

ସେଦିନ ରାତ୍ରରେ ସନ୍ଧାନ ମିଳିଲା ଯେ ପେମ୍‌ବର୍ଲି ପ୍ରାସାଦରେ ଘରର ବା ତାଙ୍କ ପରିବାରର କେହି ନାହାନ୍ତି । ପରଦିନ ପେମ୍‌ବର୍ଲି କଥା ପଡ଼ିବାରୁ ଏଲିଜାବେଥ୍ ସେଠାକୁ ଯିବାରେ ଆପତ୍ତି ନାହିଁ ବୋଲି ଜଣାଇଲେ ।

ଗାଡ଼ି ଚାଲିଲା । ପେମ୍‌ବର୍ଲି ପ୍ରାସାଦର ଫାଟକରେ ପହଞ୍ଚିଲା ବେଳକୁ ଏଲିଜାବେଥଙ୍କ ମନରେ ନାନା ଭାବର ଉଦୟ ହେଲା । କିଛି ସମୟ ଯାଏ ସେମାନେ ପାର୍କରେ ବୁଲିଲେ । ଏଠାରେ ଅନେକ ଦେଖିବାର ଜିନିଷ ଥିଲା । ଏଲିଜାବେଥଙ୍କୁ ସ୍ଥାନଟି ଖୁବ୍ ଭଲ ଲାଗିଲା

ପେମ୍‌ବର୍ଲି ପ୍ରାସାଦଟି ଗୋଟିଏ ପାହାଡ଼ ଉପରେ ଅବସ୍ଥିତ । ସମସ୍ତ ଗୃହ ପ୍ରସ୍ତରରେ ନିର୍ମିତ । ଏହାର ପଛକୁ ଗୋଟିଏ ଉଚ୍ଚ ପାହାଡ଼; ସାମନାରେ ଗୋଟିଏ ସ୍ରୋତ ନଦୀ ବହିଯାଉଛି । ସମସ୍ତେ ପ୍ରାସାଦର ପ୍ରଶଂସା କଲେ । ଏଲିଜାବେଥ ମନେ ମନେ ଭାବିଲେ, "ଏଭଳି ଏକ ପ୍ରାସାଦର ଅଧିକାରିଣୀ ହୋଇପାରିଲେ ଗର୍ବର କାରଣ ଅଛି ।"

ପାହାଡ଼ରୁ ଓହ୍ଲାଇବା ପରେ ଗୋଟିଏ ପୋଲ ପାର ହୋଇ ସେମାନେ ପ୍ରାସାଦର ଦ୍ୱାରଦେଶକୁ ଗଲେ । ସେମାନେ ଘର ଭିତର ଦେଖିବାର ଇଚ୍ଛା ପ୍ରକାଶ କରିବାରୁ ଜଣେ ବୃଦ୍ଧା ଦାସୀ ସେମାନଙ୍କୁ ହଲ୍‌କୁ ନେଇଗଲା । ହଲ୍ ପରେ ଭୋଜନାଳୟ । ପ୍ରତ୍ୟେକ ଗୃହ ସୁନ୍ଦର ଭାବରେ ନିର୍ମିତ ଓ ରୁଚିସମ୍ପନ୍ନ ଉପକରଣରେ ସୁସଜ୍ଜିତ । ଏଲିଜାବେଥ ଝରକା ପାଖକୁ ଯାଇ ବାହାରର ପ୍ରାକୃତିକ ଶୋଭା ଦେଖି ମୁଗ୍ଧ ହୋଇଗଲେ । ଯେ କୌଣସି ଝରକା ପାଖରେ ଛିଡ଼ାହେଲେ ଏହିପରି ମନୋହର ଦୃଶ୍ୟ ଚକ୍ଷୁରେ ପଡ଼ୁଥିଲା । ରୋଜିଙ୍ଗସ ଅପେକ୍ଷା ଏହାର ସାଜସଜ୍ଜା ଆହୁରି ମୂଲ୍ୟବାନ୍ ଓ ରୁଚିକର ବୋଲି ବୋଧ

ହେଲ । ଏଲିଜାବେଥ ମନେ ମନେ ଭାବିଲେ, "ଇଚ୍ଛା କରିଥିଲେ ଦିନେ ମୁଁ ଏ ସମସ୍ତର ଅଧିକାରିଣୀ ହୋଇପାରିଥାନ୍ତି ।"

ଘରର ମାଲିକ ମିଃ ଡାର୍‌ସି କେବେ ଆସିବେ ବୋଲି ପଚାରିବାକୁ ଏଲିଜାବେଥ୍‌ଙ୍କର ଇଚ୍ଛା ହେଉଥିଲା; କିନ୍ତୁ ସେଥିପାଇଁ ସାହସ ଆସୁ ନଥିଲା । ଯାହାହେଉ ମି. ଗାର୍ଡିନର ପଚାରିଦେଲେ । ବୃଦ୍ଧା କହିଲି, "ସେ ଘରେ ନାହାନ୍ତି; କିନ୍ତୁ କାଲିକି ସେ ଆସିବାର ପୂରା ସମ୍ଭାବନା ଅଛି ।" ଏହି ବୃଦ୍ଧାଙ୍କର ନାମ ମିସେସ୍ ରେନୋଲ୍‌ଡସ ।

ସେ ଆଗନ୍ତୁକମାନଙ୍କୁ କାନ୍ଥରେ ଝୁଲୁଥିବା ମି. ଡାର୍‌ସିଙ୍କ ଛବିଟି ଦେଖାଇଦେଲେ । ମିଃ ଗାର୍ଡିନର କହିଲେ, "ତୁମ ମାଲିକଙ୍କ ସୁନ୍ଦର ଚେହେରା କଥା ମୁଁ ବହୁତ ଶୁଣିଛି ।" ତତ୍ପରେ ସେ ଏଲିଜାବେଥ୍‌ଙ୍କୁ କହିଲେ, "ଦେଖି ତୁମେ କହିଲ, ଛବିଟି ଠିକ୍ ତାଙ୍କରି ପରି ହୋଇଛି ?"

ଏଲିଜାବେଥଙ୍କ ସହିତ ତା ପ୍ରଭୁଙ୍କର ଆଗରୁ ପରିଚୟ ଅଛି ଶୁଣି ଦାସୀ ଏଲିଜାବେଥଙ୍କୁ ଅଧିକ ସମ୍ମାନ ଦେଖାଇ ପଚାରିଲେ, "ତୁମର ତାଙ୍କ ସହିତ ଘନିଷ୍ଠ ପରିଚୟ ଅଛି ?"

"ନା, ସାମାନ୍ୟ ପରିଚୟ ମାତ୍ର ।"

"ତାଙ୍କର ଚେହେରା କଅଣ ସୁନ୍ଦର ?"

"ନିଶ୍ଚୟ, ଖୁବ୍ ସୁନ୍ଦର ଚେହେରା ।"

"ମୁଁ ତାଙ୍କ ଭଳି ସୁନ୍ଦର ପୁରୁଷ ଦେଖିନାହିଁ । ସେ କଅଣ ପେମ୍‌ବର୍ଲିରେ ବେଶିଦିନ ରହୁଛନ୍ତି କି—କେବେ କେବେ ଆସନ୍ତି ।"

ମିଃ ଗାର୍ଡିନର କହିଲେ, "ତୁମର ମାଲିକ ବାହା ହୋଇ ପଡ଼ନ୍ତେ କି ପେମ୍‌ବର୍ଲି ଛାଡ଼ି ଯାଆନ୍ତେ ନାହିଁ ।"

ମିସେସ୍ ରେନଲ୍‌ଡ୍‌ସ ପୁଣି କହିଲେ, "ମୁଁ ଏତେ ଦିନ ହେଲା ରହିଲିଣି । ତାଙ୍କ ତୁଣ୍ଡରୁ ପଦେ କଠୋର କଥା ଶୁଣି ନାହିଁ । ତାଙ୍କ ଚାରିବର୍ଷ ହେଲା ବେଳୁ ମୁଁ ଏଇଠି ରହିଛି ।"

ଏଲିଜାବେଥଙ୍କର ଧାରଣା ଥିଲା, ମିଃ ଡାର୍‌ସି ଜଣେ ଉଦ୍ଧତ ସ୍ୱଭାବର ଲୋକ ଓ ତାଙ୍କର ପ୍ରକୃତି ଉଗ୍ର । ଏବେ ଏଲିଜାବେଥ ନିଜର ମତ ବଦଳାଇବାକୁ ବାଧ୍ୟହେଲେ ।

ମିସେସ୍ ଗଜଲ୍ଡ଼ନ୍ କହିଲେ "ତାଙ୍କ ବାପା ମଧ୍ୟ ସେହିପରି ସୁନ୍ଦର ଥିଲେ । ତାଙ୍କ ଛବି ଉପର ମହଲାରେ ଅଛି । ମିଃ ଡାର୍ସିଙ୍କ ଭଲ ପ୍ରଭୁ ପାଇବା ଗ୍ରାମର କଥା । ଗ୍ରାମର ଗ୍ରାମବାସୀଙ୍କ ପ୍ରତି କି କୋମଳ ବ୍ୟବହାର ? ରଇତମାନେ ତାଙ୍କୁ ଖୁବ୍ ମାନନ୍ତି । ଦରିଦ୍ରମାନଙ୍କ ପ୍ରତି ତାଙ୍କ ଦୟାର ତୁଳନା ନାହିଁ । କେହି କେହି ତାଙ୍କୁ ଗର୍ବୀ ବୋଲି କହନ୍ତି । କିନ୍ତୁ ମୁଁ କେବେ ତାଙ୍କର ଗର୍ବ ଦେଖି ନାହିଁ । ବୋଧହୁଏ ସେ ଅନ୍ୟ ଯୁବକଙ୍କ ପରି ବାଜେ ଗପ କରନ୍ତି ନାହିଁ ବୋଲି ଲୋକେ ତାଙ୍କୁ ଗର୍ବୀ ବୋଲି କହୁଥିବେ ।"

ଡାର୍ସିଙ୍କ ପ୍ରତି ଏଲିଜାବେଥଙ୍କର ମନୋଭାବ ଏକବାରେ ବଦଳି ଆସିଲା ।

## ପେମ୍ବର୍ଲିର ଅଧିକାରୀ ମିଃ ଡାର୍ସି

ସେମାନେ ସବୁ ଘର ବୁଲି ଦେଖି ତଳକୁ ଓହ୍ଲାଇଲେ । ଏହି ସମୟରେ ବଗିଚାର ମାଳି ଆସି ସେମାନଙ୍କୁ ପ୍ରାନ୍ତର ପାରକରାଇ ନଦୀ ଆଡ଼କୁ ନେଲା । ଗାର୍ଡିନର ଦମ୍ପତି ଛୁଟାହୋଇଗଲେ । ମିଃ ଗାର୍ଡିନର ଘରଟିକୁ ଚାହିଁ ତାର ବୟସ କଳନା କରୁଥିଲେ । ହଠାତ୍ କାହୁଁ ଘରର ମାଲିକ ମିଃ ଡାର୍ସି ବାହାରିପଡ଼ିଲେ ।

ମିଃ ଡାର୍ସି ସେମାନଙ୍କ ନିକଟକୁ ଆସି ଏଲିଜାବେଥଙ୍କୁ ଅତି ଭଦ୍ର ଭାବରେ କିଛି କହିଲେ । ଏଲିଜାବେଥ ବଡ଼ ଅସ୍ୱସ୍ତି ଅନୁଭବ କରୁଥିଲେ; କିନ୍ତୁ ଚାଲିଯିବାର ଉପାୟ ନଥିଲା । ଚକିତ ଓ ବିସ୍ମିତ ହୋଇ ଏଲିଜାବେଥ ତାଙ୍କ ପ୍ରଶ୍ନର ଉତ୍ତର ଦେଲେ, କିନ୍ତୁ ସିଧା ତାଙ୍କ ମୁହଁକୁ ଚାହିଁ ପାରିଲେ ନାହିଁ । ଡାର୍ସିଙ୍କ ପୂର୍ବ ବ୍ୟବହାର ଏକବାରେ ବଦଳିଯାଇଥିଲା । ଏଥିରେ ଏଲିଜାବେଥ ବିସ୍ମୟାଭିଭୂତ ହୋଇଗଲେ । ମିଃ ଡାର୍ସି ମଧ୍ୟ ନିଜକୁ ଅସ୍ଥିର ମନେକରୁଥିଲେ । ଅନେକ ଥର ସେ ପଚାରିଲେ, "ଡର୍ବିଶାୟାରରେ କେତେ ଦିନ ରହିବ ?" ଏତେ ଥର ପଚାରିବାର କିଛି ଦରକାର ନଥିଲା । ତାଙ୍କ ମନ ଅନ୍ୟତ୍ର ରହିଥିଲା, ଏଥିରେ ସନ୍ଦେହ ନାହିଁ ।

କିଛି ସମୟ ଠିଆ ହୋଇ ରହି ଏଲିଜାବେଥଙ୍କଠାରୁ ସେ ବିଦାୟ ନେଇ ଗଲେ ।

ସମସ୍ତେ ଡାର୍‌ସିଙ୍କ ଡେଣ୍ଟଶାୟାରର ପ୍ରଶଂସା କଲେ । ଏଲିଜାବେଥ ଲଜ୍ଜା ଓ ବିରକ୍ତିରେ ଚୁପ୍‌ ହୋଇ ରହିଲେ । ପେମ୍‌ବର୍ଲି ପ୍ରାସାଦ ଦେଖିଯିବା ଉଚିତ ହୋଇ ନାହିଁ ବୋଲି ସେ ବୁଝିପାରିଲେ । ଡାର୍‌ସି ଦିନକ ଆଗରୁ ଆସିଯିବାର କାରଣ ସେ ଖୋଜି ପାଇଲେ ନାହିଁ । ତାଙ୍କ ଆଚରଣରେ ଏଭଳି ପରିବର୍ତ୍ତନର କାରଣ କଅଣ ? ଏଲିଜାବେଥଙ୍କ ସାଙ୍ଗେ ତାଙ୍କର କଥାବାର୍ତ୍ତା ହେବାଟା ଗୋଟାଏ ଆଶ୍ଚର୍ଯ୍ୟର ବିଷୟ ।

ସେମାନେ ଛୋଟାବାଟେ ଉଚ ଭୂମି କୁ ଉଠିଲେ । ସେଠାରୁ ବୃକ୍ଷଗୁଡ଼ିକର ଦୃଶ୍ୟ ମନୋହର ଦେଖାଯାଉଥିଲା । ମି. ଗାର୍ଡ଼ିନର ପ୍ରସ୍ତାବ କଲେ, "ଚାଲ, ପାର୍କର ଚାରିପାଖେ ବୁଲି ଆସିବା ।" କିନ୍ତୁ ଥରେ ବୁଲିବାକୁ ହେଲେ ଦଶ-ମାଇଲ ଚାଲିବାକୁ ପଡ଼ିବ ଶୁଣି ପ୍ରସ୍ତାବ ବନ୍ଦ ହୋଇଗଲା । ସେମାନେ ପୁଣି ନଈ ଆଡ଼କୁ ଆସିଲେ । ନଈ ଉପର ପୋଲଟା ପାରହୋଇ ସେମାନେ ପ୍ରାସାଦ ଆଡ଼କୁ ଚାଲିଲେ । ବାଟରେ ମି. ଡାର୍‌ସି ସେମାନଙ୍କ ପାଖକୁ ଆସୁଥିବାର ଦେଖାଗଲା । ଏଲିଜାବେଥ ଲକ୍ଷ୍ୟ କଲେ, ଡାର୍‌ସିଙ୍କର ଭଦ୍ର ଓ ନମ୍ର ବ୍ୟବହାର ବଢ଼ିଛି । ଭଦ୍ରତା ଦେଖାଇ ସେ ପ୍ରାସାଦଟିର ପ୍ରଶଂସା କଲେ ।

ତାଙ୍କୁ ଅନ୍ୟମାନଙ୍କ ସହିତ ପରିଚିତ କରାଇ ଦେବା ପାଇଁ ଡାର୍‌ସି ଏଲିଜାବେଥଙ୍କୁ ଅନୁରୋଧ କଲେ । ଏଲିଜାବେଥ ଭାବିଲେ, ଯେଉଁମାନଙ୍କୁ ତାଙ୍କର ଘୃଣା ସେହିମାନଙ୍କ ସହିତ ପୁଣି ପରିଚିତ ହେବା ପାଇଁ ଇଚ୍ଛା ! ଯାହାହେଉ ଏଭଳି ଉଚ ପରିବାର ସହିତ ଆମର ସମ୍ବନ୍ଧ ଅଛି ଜାଣିଲେ ଡାର୍‌ସି ବିସ୍ମିତ ହୋଇଯିବେ ।

ଏଲିଜାବେଥ ଗାର୍ଡ଼ିନର ଦମ୍ପତିଙ୍କ ସହିତ ତାଙ୍କ ପରିବାରର ସମ୍ବନ୍ଧ ଦର୍ଶାଇ ସେମାନଙ୍କ ସଙ୍ଗେ ଡାର୍‌ସିଙ୍କର ପରିଚୟ କରାଇଦେଲେ । ଡାର୍‌ସି ବିସ୍ମିତ ହୋଇ ଯାଇଥିଲେ, ଏଥିରେ ସନ୍ଦେହ ନାହିଁ । ମି. ଡାର୍‌ସି ମି: ଗାର୍ଡ଼ିନରଙ୍କ ସହିତ ଗଳ୍ପ ଆରମ୍ଭ କରିଦେଲେ । ଏଲିଜାବେଥ ସେ ଦୁହିଁଙ୍କର କଥାବାର୍ତ୍ତା ଶୁଣିବାକୁ ଲାଗିଲେ ।

ମାଛଧରା ବିଷୟ ପଡ଼ିବାରୁ ମି: ଡାର୍‌ସି ମି: ଗାର୍ଡ଼ିନରଙ୍କୁ ମାଛ ଧରିବାକୁ ନିମନ୍ତ୍ରଣ କଲେ ଓ ବନ୍ସୀ ଇତ୍ୟାଦି ଉପକରଣ ଯୋଗାଇ ଦେବେ ବୋଲି କହିଲେ ନଦୀର କେଉଁ ଅଂଶରେ ଭଲ ମାଛ ପଡ଼ିବ ତାହା ମଧ୍ୟ ଦେଖାଇଦେଲେ ।

ମିସେସ୍ ଗାର୍ଡିନର ଓ ଏଲିଜାବେଥ ହାତ ଧରାଧରି ହୋଇ ଚାଲି-ଥିଲେ । ମିସେସ୍ ନେଲଡ଼ସ ବିଷୟରେ ଗୁଛିହରହିଲେ । ଏଲିଜାବେଥ ଡାର୍ସିଙ୍କ ପରିବର୍ତ୍ତନ ବିଷୟ ଚିନ୍ତା କରୁଥାନ୍ତି । ସେ ତାଙ୍କୁ ଯେପରି ପ୍ରତ୍ୟାଖ୍ୟାନ କରିଥିଲେ, ତାହାରି ଫଳରେ ଏ ପରିବର୍ତ୍ତନ ଘଟିଥିବ ବୋଲି ସେ ବିଶ୍ୱାସ କରିପାରିଲେ ନାହିଁ ।

କିଛି ସମୟ ପରେ ମିସେସ୍ ଗାର୍ଡିନର ସ୍ୱାମୀଙ୍କ ହାତ ଧରି ଚାଲିଲେ । ମି: ଡାର୍ସି ଏଲିଜାବେଥଙ୍କ ପାଖେ ପାଖେ ଚାଲିଲେ । ଏଲିଜାବେଥ କହିଲେ, "ପେମ୍ବର୍ଲିକୁ ଆସିବା ପୂର୍ବରୁ ଆମେ ଶୁଣିଥିଲୁ ଯେ ତୁମେ ଏଠାରେ ନାହିଁ ।" ଡାର୍ସି ଉତ୍ତର କଲେ, "ମୋର ଆଜି ଏଠାରେ ପହଞ୍ଚିବାର କଥା ନ ଥିଲା । ଅପ୍ରତ୍ୟାଶିତ ଭାବରେ ଏକୁଟିଆ ଚାଲି ଆସିଛି । ମୋର ସଙ୍ଗୀମାନେ କାଲି ସକାଳକୁ ପହଞ୍ଚିବେ । ସେମାନଙ୍କ ଭିତରେ ମି· ବିଙ୍ଗଲେ ଓ ତାଙ୍କ ଭଉଣୀ-ମାନଙ୍କୁ ଦେଖିବାକୁ ପାଇବ । ଆଉ ଜଣେ ଭଦ୍ରଲୋକ ବିଶେଷ ଭାବରେ ତୁମକୁ ଜାଣିବା ପାଇଁ ଚାହାନ୍ତି । ତୁମେ ଲାମଟନ୍‌ରେ ଥିଲା ବେଳେ ମୁଁ ମୋ ଭଉଣୀକୁ ତୁମ ସହିତ ପରିଚୟ କରାଇ ପାରେ କି ?" ମିସ୍ ଡାର୍ସିଙ୍କ ସହିତ ଏଲିଜାବେଥଙ୍କର ପରିଚୟ—ନିଶ୍ଚୟ ଏଥିରେ ମି· ଡାର୍ସିଙ୍କର ହାତ ଥିବ । ଏଲିଜାବେଥ ଯେତିକି ବିସ୍ମିତ ହେଲେ ସେତିକି ଆନନ୍ଦିତ ମଧ୍ୟ ହେଲେ ।

ସମସ୍ତେ ପ୍ରାସାଦକୁ ଫେରିବା ପରେ ବନ୍ଧୁତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ଡାର୍ସିଙ୍କଠାରୁ ଅନ୍ୟମାନେ ବିଦାୟନେଲେ ।

ମିଷ୍ଟର ଓ ମିସେସ୍ ଗାର୍ଡିନର ଡାର୍ସିଙ୍କ ବିଷୟରେ ଆଲୋଚନା କଲେ । ସେମାନେ ଡାର୍ସିଙ୍କ ଉଚ୍ଚ ଦରର ଲୋକ ବୋଲି ପ୍ରଶଂସା କଲେ । ମିସେସ୍ ଗାର୍ଡିନର କହିଲେ, "ଏଲିଜାବେଥ, ମି: ଡାରସି ମି· ଉଇକ୍‌ହାମଙ୍କ ଭଳି ସେତେ ସୁନ୍ଦର ହୋଇ ନପାରନ୍ତି; କିନ୍ତୁ ସେ ଅପ୍ରୀତିକର ବୋଲି କାହିଁକି କହୁଥିଲ ?" ଏଲିଜାବେଥ ଉତ୍ତର କଲେ, "କଥା ହେଉଛି, ସେ ଏତେ ଭଦ୍ର ହୋଇପାରନ୍ତି ବୋଲି ମୋର ଧାରଣା ନଥିଲା ।"

ମି: ଗାର୍ଡିନର ପୁଣି କହିଲେ, "ତାଙ୍କ ବିଷୟରେ ମୁଁ ଯେତେଦୂର ଜାଣେ, ସେ ଉଇକ୍‌ହାମ୍ ପ୍ରତି ଦୁର୍ବ୍ୟବହାର କରିଥିବେ ବୋଲି ମୁଁ ବିଶ୍ୱାସ

ଜଣିପାରୁ ନାହିଁ । ତାଙ୍କୁ ଦେଖିଲା ମାତ୍ରେ ଜଣାଯାଏ ସେ ଖରାପ ପ୍ରକୃତିର ଲୋକ ନୁହନ୍ତି ।”

ଏଲିଜାବେଥ କହିଲେ, “କେଣ୍ଟରେ ମୋର ବନ୍ଧୁବାନ୍ଧବଙ୍କଠାରୁ ଶୁଣିଛି, ତାଙ୍କର ଚରିତ୍ର ସେତେ ଦୋଷଯୁକ୍ତ ନୁହେଁ । ହାର୍ଟଫୋର୍ଡଶାୟାରର ଲୋକେ ଉଇକ୍‌ହାମ୍‌ଙ୍କୁ ଯେପରି ମେଳାପି ମନେକରନ୍ତି, ସେ ତା ନୁହନ୍ତି ।” ନିଜର ଯୁକ୍ତିକୁ ଦୃଢ଼ କରିବା ପାଇଁ ଏଲିଜାବେଥ ସେ ଦୁହିଁଙ୍କ ଭିତରେ ଟଙ୍କା ଦେଣ ନିଅଣ କଥା କହିଲେ; କିନ୍ତୁ ସେ କେଉଁଠାରୁ ଏ ଖବର ପାଇଛନ୍ତି ତାହା କହିଲେ ନାହିଁ ।

ମିସେସ୍ ଗାର୍ଡ଼ିନର ବିସ୍ମିତ ହୋଇଗଲେ । ଭୋଜନ ନିକଟ ହୋଇ ଆସିଥିବାରୁ ଆଲୋଚନା ସେତିକରେ ବନ୍ଦହୋଇଗଲା ।

ସନ୍ଧ୍ୟାବେଳକୁ ପୁରୁଣା ବନ୍ଧୁମାନଙ୍କ ସଙ୍ଗେ ସାକ୍ଷାତ ହେଲା । ଏଲିଜାବେଥ ଏତେ ଚିନ୍ତିତ ହୋଇଯାଇଥିଲେ ଯେ ସେ ନୂଆ ବନ୍ଧୁ କରିବାକୁ ଚିନ୍ତା କରିପାରିଲେ ନାହିଁ । ତାଙ୍କର ଏକମାତ୍ର ଚିନ୍ତା ଥିଲା ଡାର୍‌ସିଙ୍କ ବ୍ୟବହାରରେ ପରିବର୍ତ୍ତନ ଓ ତାଙ୍କ ଭଉଣୀଙ୍କ ସଙ୍ଗେ ସାକ୍ଷାତ କରିବା ପାଇଁ ତାଙ୍କର ଅନୁରୋଧ ।

## ଏଲିଜାବେଥଙ୍କ ମତ ପରିବର୍ତ୍ତନ

ଏହାର ପରଦିନ ସକାଳେ ଏଲିଜାବେଥ ଝରକା ପାଖରେ ଛିଡ଼ା ହୋଇଛନ୍ତି, ଏହି ସମୟରେ ଗୋଟିଏ ଗାଡ଼ି ଦେଖାଗଲା । ଗାଡ଼ି ଭିତରେ ଜଣେ ପୁରୁଷ ଓ ଜଣେ ମହିଳା । ସେ ଦୁହିଁଙ୍କୁ ଦେଖି ସେ ଦଉଡ଼ିଯାଇ ମିଷ୍ଟର ଓ ମିସେସ୍ ଗାର୍ଡ଼ିନରଙ୍କୁ ଏହି ବିଶିଷ୍ଟ ଅତିଥିଙ୍କର ଆଗମନ ସମ୍ବାଦ ଜଣାଇଦେଲେ । ସେମାନେ ପ୍ରଥମେ ବିସ୍ମିତ ହେଲେ ଓ ମନେ ମନେ ସ୍ଥିର କଲେ ଯେ ଭଦ୍ର ଲୋକଙ୍କର ଏଲିଜାବେଥଙ୍କ ପ୍ରତି ବିଶେଷ ଆକର୍ଷଣ ଅଛି ।

ଆଗନ୍ତୁକ ଦୁହେଁ ହେଉଛନ୍ତି ମିଃ ଡାର୍‌ସି ଓ ତାଙ୍କ ଭଉଣୀ ଜର୍ଜିଆନା । ସେମାନେ ଆସିବାରୁ ଏଲିଜାବେଥ ନିଜକୁ ବଡ଼ ଅପ୍ରକୃତିସ୍ଥ ମନେକଲେ । ମିସ୍ ଡାର୍‌ସି ମଧ୍ୟ ବିଚଳିତ ହୋଇଥିବାର ଦେଖାଗଲା । ଏଲିଜାବେଥ ଲକ୍ଷ୍ୟ

କଲେ, ମିସ୍ ଡାର୍ସି ବଡ଼ ଲଜକୁଳ, ତାଙ୍କ ମୁହଁରୁ ପଦେ କଥା ବାହାର କରିବା କଠିନ ।

ମିସ୍ ଡାର୍ସିଙ୍କର ବୟସ ମାତ୍ର ଷୋଳବର୍ଷ ହେଲେ ହେଁ ବେଶ୍ ପୁଷ୍ଟ ସବଳ ଓ ଦେଖିବାକୁ ସୁନ୍ଦରୀ । ତାଙ୍କର ସରଳ ଓ ଭଦ୍ର ବ୍ୟବହାରରେ ଏଲିଜାବେଥ ସନ୍ତୁଷ୍ଟ ହୋଇଗଲେ ।

ସେମାନେ ଅଳ୍ପ ସମୟ କଥାବାର୍ତ୍ତା ହେଉଥିବାବେଳକୁ ହଠାତ୍ ମି. ବିଙ୍ଗ୍‌ଲେ ପହଞ୍ଚିଗଲେ । ଏଲିଜାବେଥଙ୍କର ତାଙ୍କ ପ୍ରତି ପୂର୍ବର ଘୃଣାଭାବ ନଥିଲା । ଯାହା କିଛି ଥାଆନ୍ତା, ତାହା ମଧ୍ୟ ବେଶି ବେଳଯାଏ ରହିପାରିନଥାନ୍ତା । ବିଙ୍ଗ୍‌ଲେ ଅତି ଭଦ୍ର ଓ କୋମଳ ସ୍ୱରରେ ଏଲିଜାବେଥଙ୍କୁ ତାଙ୍କ ଖବର ପଚାରି ବୁଝିଲେ ।

ମିଷ୍ଟର ଓ ମିସେସ୍ ଗାର୍ଡ଼ିନର ମଧ୍ୟ ବିଙ୍ଗ୍‌ଲେଙ୍କ ବ୍ୟବହାରରେ ମୁଗ୍ଧ ହୋଇଗଲେ । ସେ ଦୁହେଁ ଡାର୍ସି ଓ ଏଲିଜାବେଥଙ୍କ ଉପରେ ଦୃଷ୍ଟି ରଖିଥିଲେ ଓ ସେମାନଙ୍କ ଭାବଭଙ୍ଗୀ ଲକ୍ଷ୍ୟ କରୁଥିଲେ । ସେ ଦୁହିଁଙ୍କର ଧାରଣା ହେଲା ଯେ ଡାର୍ସି ଏଲିଜାବେଥଙ୍କୁ ଭଲପାଆନ୍ତି, ଏହା ନିଃସନ୍ଦେହ ।

ବିଙ୍ଗ୍‌ଲେଙ୍କୁ ଦେଖିଲା ମାତ୍ରେ ଏଲିଜାବେଥ ନିଜ ଭଉଣୀ କଥା ମନେ ପକାଇଲେ । ସେ ମିସ୍ ଡାର୍ସିଙ୍କ ପ୍ରତି ବିଙ୍ଗ୍‌ଲେଙ୍କର ମନୋଭାବ ଜାଣିବାକୁ ଚେଷ୍ଟା କଲେ । ଏହି ମିସ୍ ଡାର୍ସି ଜେନ୍‌ର ସ୍ଥାନ ଅଧିକାର କରିଥିବାର ଏଲିଜାବେଥ ଶୁଣିଥିଲେ; କିନ୍ତୁ ମିସ୍ ଡାର୍ସିଙ୍କ ପ୍ରତି ବିଙ୍ଗ୍‌ଲେଙ୍କର ବିଶେଷ ଆକର୍ଷଣ ଥିବାର ସେ ଦେଖି ପାରିଲେ ନାହିଁ । କଥା ପ୍ରସଙ୍ଗରେ ବିଙ୍ଗ୍‌ଲେ ଦୁଇ ତିନି ଥର ଜେନ୍‌ଙ୍କର ନାମୋଲ୍ଲେଖ କଲେ, ବୋଧହୁଏ ଅବସ୍ଥା ଦୃଷ୍ଟିରୁ ସେ ଜେନ୍‌ଙ୍କ ବିଷୟରେ ବେଶି କିଛି କହିବାକୁ ସାହସ କଲେ ନାହିଁ ।

ଏଲିଜାବେଥ ମିଃ ଡାର୍ସିଙ୍କ ମୁହଁକୁ ଚାହିଁବା ପାଇଁ ଲଜ୍ଜା ଅନୁଭବ କରୁଥିଲେ । ତଥାପି ମିଃ ଡାର୍ସି ଯେ ତାଙ୍କର ଶୁଭାକାଙ୍କ୍ଷୀ ଏ ବିଷୟରେ ତାଙ୍କର ସନ୍ଦେହ ରହିଲା ନାହିଁ । ଦିନେ ଏଇ ଡାର୍ସି ମିଷ୍ଟର ଓ ମିସେସ୍ ଗାର୍ଡ଼ିନର ପ୍ରଭୃତିଙ୍କୁ ପ୍ରକାଶ୍ୟରେ ନୀଚ ଲୋକ ବୋଲି କହିବାକୁ କୁଣ୍ଠିତ ନ ଥିଲେ; କିନ୍ତୁ ଆଜି ସେହିମାନଙ୍କ ପ୍ରତି କି ଭଦ୍ର ଓ ମଧୁର ବ୍ୟବହାର ! ଏଲିଜାବେଥ ଏହି ପରିବର୍ତ୍ତନରେ ବିସ୍ମିତ ହୋଇ ଭାବିଲେ ଡାର୍ସିଙ୍କର ସେ ଅସ୍ମାଭିମାନ ଓ ଗର୍ବ କୁଆଡ଼େ ଗଲା ?

ଯିବା ପୂର୍ବରୁ ମିଷ୍ଟର ଡାର୍‌ସି ଓ ତାଙ୍କ ଭଉଣୀ ସମସ୍ତଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କରିଗଲେ । ଏଲିଜାବେଥ ବିଛଣାରେ ପଡ଼ିରହି ଡାର୍‌ସିଙ୍କ କଥା ଚିନ୍ତା କରିବାକୁ ଲାଗିଲେ । ସେ ତାଙ୍କୁ ଘୃଣା କରିବାର କୌଣସି କାରଣ ଖୋଜି ପାଉନଥିଲେ ନାହିଁ । ତାଙ୍କର ଯେ ଅନେକ ଭଲ ଗୁଣ ଅଛି, ତାହା ସେ ଅନୁଭବ କରିପାରିଲେ । ସେ ଡାର୍‌ସିଙ୍କ ପ୍ରତି କୃତଜ୍ଞ ରହିବାର ଅନେକ କାରଣ ଥିଲା । ପ୍ରତ୍ୟାଖ୍ୟାନ ସତ୍ତ୍ୱେ ସେ ଏଲିଜାବେଥଙ୍କ ପ୍ରତି ଭଦ୍ର ବ୍ୟବହାର ଦେଖାଇବା ଅବଶ୍ୟ ପ୍ରଧାନ କାରଣ । ଏଲିଜାବେଥ ମନେକଲେ, ଡାର୍‌ସିଙ୍କୁ ନିଷ୍ଠୁର କଥା କହି ସେ ଅନ୍ୟାୟ କରିଛନ୍ତି; ପୁଣି ଯଦି ତାଙ୍କ ଆଡୁ ବିବାହ ପ୍ରସ୍ତାବ ଆସେ ଭଲ ହେବ ।

## ପ୍ରେମରେ ପ୍ରତିଯୋଗିତା

ଡାର୍‌ସି ଭାଇ ଭଉଣୀ ପେମ୍‌ବର୍ଲିକୁ ଯିବା ପରେ ତାଙ୍କୁ ଦେଖାକରିବା ପାଇଁ ମିସେସ୍ ଗାର୍ଡିନର ଓ ଏଲିଜାବେଥ ସ୍ଥିର କଲେ । ମି: ଗାର୍ଡିନର କେତେକ ବନ୍ଧୁଙ୍କ ସହିତ ମାଛ ଧରିବାକୁ ଯାଇଥିଲେ । ଏହି ଅବସରରେ ସେ ଦୁହେଁ ବାହାରିପଡ଼ିଲେ ।

ପେମ୍‌ବର୍ଲିରେ ପହଞ୍ଚି ସେମାନେ ହଲ୍ ପାର ହେଲେ । ଜଣେ ଦାସୀ ସେ ଦୁହିଁଙ୍କୁ ବୈଠକଖାନାକୁ ନେଇଗଲା । ସେଠାରେ ମିସ୍ ଡାର୍‌ସି, ମିସ୍ ବିଙ୍ଗଲେ, ମିସେସ୍ ହର୍ଷ୍ଟ ଓ ଆଉ ଜଣେ ମହିଳା ବସିଥିଲେ । ଏହି ମହିଳାଙ୍କର ନାମ ମିସେସ୍ ଆନେସ୍ଲି । ମିସ୍ ବିଙ୍ଗଲେ ଲଣ୍ଡନ ଗଲେ ଏହାଙ୍କ ସହିତ ରହୁଥିଲେ ।

ମିସ୍ ଡାର୍‌ସି ଏ ଦୁହିଁଙ୍କୁ ସାଦର ଅଭ୍ୟର୍ଥନା କଲେ । ମିସେସ୍ ହର୍ଷ୍ଟ ଓ ମିସ୍ ବିଙ୍ଗଲେ ସାମାନ୍ୟ ପ୍ରଣାମ କରାଇ ବସି ପଡ଼ିଲେ । ମିସେସ୍ ଆନେସ୍ଲି କଥାବାର୍ତ୍ତା ଆରମ୍ଭ କରିଦେଲେ । ମିସ୍ ଡାର୍‌ସି ଏଥିରେ ଯୋଗ ଦେବାକୁ ଇଚ୍ଛା କରି ମଝିରେ ପଦେ ଅଧେ କହୁଥିଲେ ।

ଏଲିଜାବେଥ ବୁଝିପାରିଲେ, ମିସ୍ ବିଙ୍ଗଲେ ତାଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଛନ୍ତି । କିଛି ସମୟ ପରେ ମିସ୍ ବିଙ୍ଗଲେ ଏଲିଜାବେଥଙ୍କ ତାଙ୍କ

ଘର ଖବର ପଚାରିଲେ । ଏଲିଜାବେଥ ଉଦାସୀନ ଭାବରେ ତାର ଉତ୍ତର ଦେଲେ ।

ଏହା ପରେ ସମସ୍ତେ ଭୋଜନରେ ବସିଲେ । ସେମାନେ ଖାଉଥିବା ସମୟରେ ମି. ଡାର୍‌ସି ପହଞ୍ଚିଯାଇ କହିଲେ, "ମୁଁ ମି. ଗାର୍ଡ଼ିନରଙ୍କ ପାଖରେ ଥିଲି । ତାଙ୍କର ସ୍ତ୍ରୀ ଓ ଏଲିଜାବେଥ ଏଠାକୁ ଆସିବାର ଶୁଣି ଚାଲିଆସିଲି ।"

ମି. ଡାର୍‌ସିଙ୍କୁ ଦେଖି ଏଲିଜାବେଥ ସ୍ଥିର କଲେ ଯେ ସେ ତାଙ୍କ ସହିତ ସ୍ୱଚ୍ଛନ୍ଦ ଭାବରେ କଥାବାର୍ତ୍ତା କରିବେ; ନିଜକୁ ତାଙ୍କଠାରୁ ଦୂରରେ ରଖିବେ ନାହିଁ । ସେ ହସି ହସି ମି. ଡାର୍‌ସିଙ୍କ ସଙ୍ଗେ କଥାବାର୍ତ୍ତା କରୁଥିବାର ଦେଖି ମିସ୍ ବିଙ୍ଗ୍‌ଲେ କୌତୂହଳୀ ହୋଇଉଠିଲେ । ତାଙ୍କ ମନରେ ଯେ ଏଲିଜାବେଥଙ୍କ ପ୍ରତି ଈର୍ଷା ରହିଥିଲା, ଏଥିରେ ସନ୍ଦେହ ନାହିଁ । ସେ ନିଜକୁ ଦମନ କରି ନ ପାରି ବିଦ୍ରୂପ କଲା ପରି ଏଲିଜାବେଥଙ୍କୁ ପଚାରିଲେ, "ମିସ୍ ଏଲିଜାବେଥ, ମେରିଟନ୍‌ରୁ ସୈନ୍ୟ ଦଳ ଚାଲିଗଲେଣି କି ? ସେମାନେ ଚାଲିଗଲେ ତୁମ ପରିବାରର ବହୁତ କ୍ଷତି ହେବ ।"

ପାଖରେ ମି: ଡାର୍‌ସି ରହିଥିବାରୁ ସେ ଉଇକ୍‌ହାମଙ୍କ ନାମ ପ୍ରକାଶ କରି ପାରିଲେ ନାହିଁ; କିନ୍ତୁ ମିସ୍ ବିଙ୍ଗ୍‌ଲେ ଯେ ଏହି ଉଇକ୍‌ହାମଙ୍କୁ ଲକ୍ଷ୍ୟ କରି କହୁଛନ୍ତି, ତାହା ଏଲିଜାବେଥ ବୁଝିପାରିଲେ । ସେ ଉଦାସୀନ ଭାବରେ ଉତ୍ତର କଲେ, 'ହଁ, ଚାଲିଗଲେଣି ବୋଲି ଶୁଣୁଛି ।' ଏହି ଘଟଣାରେ ମି: ଡାର୍‌ସି ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ମିସ୍ ବିଙ୍ଗ୍‌ଲେ କେବଳ ଏଲିଜାବେଥଙ୍କୁ ଅପଦସ୍ତ କରିବା ଉଦ୍ଦେଶ୍ୟରେ ଏପରି କହିଥିଲେ; କିନ୍ତୁ ତାଙ୍କର ଏହି ପ୍ରଶ୍ନରେ ଅନ୍ୟମାନେ ଯେ ବିରକ୍ତ ହେବେ ତାହା ସେ ଜାଣି ନ ଥିଲେ । ଏହା ଫଳରେ ମି: ଡାର୍‌ସି ବରଂ ଏଲିଜାବେଥଙ୍କ ପ୍ରତି ଆନ୍ତରିକ ଅଧିକ ଆଦର ଦେଖାଇଲେ ।

ମିସେସ୍ ଗାର୍ଡ଼ିନର ଓ ଏଲିଜାବେଥ ଫେରିଯିବା ପାଇଁ ଗାଡ଼ିରେ ବସିଲେ । ମି: ଡାର୍‌ସି ଗାଡ଼ି ପର୍ଯ୍ୟନ୍ତ ଗଲେ । ମିସ୍ ବିଙ୍ଗଲେ ଏଲିଜାବେଥଙ୍କର ଚେହେରା, ବେଶଭୂଷା ଓ କଥାବାର୍ତ୍ତାର ସମାଲୋଚନା କରିବାକୁ ଲାଗିଲେ । କିନ୍ତୁ ମିସ୍ ଜର୍ଜିଆନା ଏହି ସମାଲୋଚନାରେ ଆଦୌ ଭାଗ ନେଲେ ନାହିଁ । ଡାର୍‌ସି ଏଲିଜାବେଥଙ୍କୁ ଭଲପାଉଥିଲେ; ତେଣୁ ମିସ୍ ଡାର୍‌ସି କେବଳ ଗୁଣ

ଦେଖିପାରୁଥିଲେ । ଘରକୁ ଫେରି ଆସିବା ପରେ ମିସ୍ ବିଙ୍ଗ୍‌ଲେ ଡାର୍‌ସିଙ୍କୁ କହିଲେ, "ଆଜି ଏଲିଜାବେଥ କେଡ଼େ କଦର୍ଯ୍ୟ ଦେଖାଯାଉଛି ! ସେ କେତେ ବଦଳିଯାଇଛି ? କଥାଗୁଡାକ କି ରୁକ୍ଷ ! ମୁହଁରେ ଟିକିଏ ହେଲେ ସରସତା ନାହିଁ ।" ଡାର୍‌ସି ସଂକ୍ଷେପରେ ଉତ୍ତର ଦେଲେ, "ମୁଁ ତ ତାଙ୍କର କିଛି ପରିବର୍ତ୍ତନ ଦେଖି ପାରିଲି ନାହିଁ !"

ଏତିକିରେ ନିରସ୍ତ ନହୋଇ ମିସ୍ ବିଙ୍ଗଲେ ପୁଣି କହିଲେ, "ତାଠାରେ ମୁଁ କୌଣସି ସୌନ୍ଦର୍ଯ୍ୟ ଦେଖି ପାରିଲି ନାହିଁ । ମୁହଁଟା ସରୁ । ତାର ଯେଉଁ ଆଖିକୁ ସୁନ୍ଦର ବୋଲି କହନ୍ତି ମୁଁ ସେଥିରେ କିଛି ବିଶେଷତ୍ୱ ଦେଖିଲି ନାହିଁ । ଫେଶନ୍ ବୋଲି ତା ଚେହେରାରେ କିଛି ନାହିଁ । ତାକୁ ଦେଖି ମୋତେ ବିରକ୍ତ ଲାଗିଲା ।"

ମିସ୍ ଡାର୍‌ସି କିଛି ମାତ୍ର ଉତ୍ତର ଦେଲେ ନାହିଁ । ମିସ୍ ବିଙ୍ଗ୍‌ଲେ ପୁଣି କହିଲେ, "ହାର୍ଟଫୋର୍ଡ଼ଶାୟାରରେ ତାଙ୍କୁ ପ୍ରଥମେ ଦେଖିଲାବେଳେ କେତେ ଲୋକ ଏଲିଜାବେଥଙ୍କୁ ସୁନ୍ଦରୀ ବୋଲି କହୁଥିଲେ । ତାହା ଶୁଣି ଆମେ ବିସ୍ମିତ ହୋଇଯାଇଥିଲୁ । ତୁମେ ମଧ୍ୟ ତାକୁ ଆଦୌ ସୁନ୍ଦରୀ ବୋଲି ମନେ କରି ନ ଥିଲ । ଅବଶ୍ୟ ପରେ ତୁମେ ତା ସମ୍ବନ୍ଧରେ ଭିନ୍ନ ମତ ପୋଷଣ କରିଥିଲ ।"

ମି: ଡାର୍‌ସି ଆଉ ନୀରବ ରହି ପାରିଲେ ନାହିଁ । ସେ କହିଲେ, "ହଁ, ତାଙ୍କୁ ଜାଣିବା ପରେ ମୋତେ ମତ ପରିବର୍ତ୍ତନ କରିବାକୁ ହେଲା । ଏବେ କେତେ ମାସ ହେଲା ମୁଁ ମନେକରୁଛି ଅତି ସୁନ୍ଦରୀମାନଙ୍କ ମଧ୍ୟରେ ସେ ଜଣେ ।" ମି· ଡାର୍‌ସି ଚାଲିଗଲେ । ମିସ୍ ବିଙ୍ଗ୍‌ଲେଙ୍କ ମନରେ ଶାନ୍ତି ଆସିଲା ନାହିଁ ।

## ଲିଡ଼ିଆ ଓ ଉଇକ୍‌ହାମ୍

ଲମ୍ବଟନରେ ପହଞ୍ଚିଲା ମାତ୍ରେ ବଡ଼ଭଉଣୀଠାରୁ ଚିଠି ପାଇବେ ବୋଲି ଏଲିଜାବେଥଙ୍କର ଆଶା ଥିଲା । ଦୁଇ ଦିନ ଦିନ ଗଲା, ତୃତୀୟ ଦିନ ଜେନ୍‌ଙ୍କ ପାଖରୁ ଏକାଠି ଦୁଇ ଖଣ୍ଡ ଚିଠି ମିଳିଲା । ଖଣ୍ଡିଏ ଚିଠିର ଠିକଣାରେ ସାମାନ୍ୟ ଭୁଲ ଥିବାରୁ ତାହା ଡେରିରେ ପହଞ୍ଚିଥିଲା ।

ମିଷ୍ଟର ଓ ମିସେସ୍ ଗାର୍ଡ଼ିନର ବୁକ ବାହାର କଲେ । ଏଲିଜାବେଥ ଚିଠି ପଢ଼ିବାକୁ ବସିଲେ । ପ୍ରଥମ ଚିଠିଟି ପାଞ୍ଚଦିନ ପୂର୍ବରୁ ଲେଖାହୋଇଥିଲା । ଏହି ଚିଠିରେ କେତୋଟି ଜରୁରୀ ଖବର ଥିଲା ଓ ଏହି ଅଂଶଟି ଦିନକ ପରେ ଲେଖାଯାଇଥିଲା ।

"ଏଥି ମଧ୍ୟରେ କେତେକ ଅପ୍ରତ୍ୟାଶିତ ଘଟଣା ଘଟିଯାଇଛି । ଗଲା ରାତି ବାରଟା ହେବ; ଆମେ ଶୋଇଥିଲୁ ବେଳେ ଖଣ୍ଡିଏ ଜରୁରୀ ଚିଠି ପହଞ୍ଚିଲା । ସେଥିରେ କର୍ଣ୍ଣେଲ ଫଷ୍ଟର ଲେଖିଥିଲେ ଯେ ଲିଡ଼ିଆ ଜଣେ ଅଫିସର ସହିତ ସ୍କଟଲଣ୍ଡକୁ ପଳାଇ ଯାଇଛି । ଏହି ଅଫିସର ଜଣକ ହେଉଛି ଉଇକ୍‌ହାମ । ଆମେ ସେଥିପାଇଁ ବିଶେଷ ଦୁଃଖିତ । ଏପରି ଗୋଟାଏ ବିବାହ ଅବଶ୍ୟ ଚିନ୍ତାର ବିଷୟ । କିନ୍ତୁ ମୋର ଆଶା, ଉଇକ୍‌ହାମ୍‌ର ଚରିତ୍ର ସେପରି ଖରାପ ନୁହେଁ । ଅନ୍ତତଃ ସେ ଧନ ଆଶାରେ ବିବାହ କରୁ ନାହିଁ, ଏ କଥା ନିଶ୍ଚିତ । ବାପା ଯେ କିଛି ଯୌତୁକ ଦେଇ ପାରିବେ ନାହିଁ ଏହା ତାଙ୍କୁ ଅଜଣା ନାହିଁ । ମାଆ ଏଥିରେ ନିତାନ୍ତ ଦୁଃଖିତ । ବାପା ନିଜକୁ ସମ୍ଭାଳି ନେଇଛନ୍ତି ।"

ଏଲିଜାବେଥ ଆର ଚିଠିଟି ଖୋଲି ପଢ଼ିଲେ । ଆଉ ଦିନକ ପରେ ଏ ଚିଠିଟି ଲେଖାହୋଇଥିଲା । ସେଥିରେ ଥିଲା—

"ଏତେ ଅଶୁଭ ଖବର କିପରି ଲେଖିବି ବୁଝି ପାରୁ ନାହିଁ । ଅବଶ୍ୟ ଉଇକହାମ୍‌ଙ୍କ ସହିତ ଆମ ଲିଡ଼ିଆର ବିବାହ ନିତାନ୍ତ ଅଯୁକ୍ତିକର; କିନ୍ତୁ ବିବାହ ହୋଇ ଯାଇଥିବା ଖବର ପାଇବାକୁ ଆମେ ବ୍ୟଗ୍ରହେଉଛୁ । ସେ ଦୁହେଁ ସ୍କଟଲଣ୍ଡକୁ ପଳାଇଥିବା ସମ୍ବାଦ ବିଷୟରେ ଘୋର ସନ୍ଦେହ ଜନ୍ମିଛି । କାଲି କର୍ଣ୍ଣେଲ ଫଷ୍ଟର ଆମ ଘରକୁ ଆସିଥିଲେ । ଲିଡ଼ିଆ ତାଙ୍କ ପାଖକୁ ଖଣ୍ଡିଏ ଶ୍ଳେଟ ଚିଠି ଲେଖିଥିଲା । ସେଥିରୁ ସେ ଦୁହେଁ ସ୍କଟଲଣ୍ଡକୁ ପଳାଉ-ଥିବାର ସୂଚନା ମିଳିଲା । କିନ୍ତୁ କର୍ଣ୍ଣେଲ ଫଷ୍ଟର ଅନ୍ୟ ଜଣେ ବିଶ୍ୱାସୀ ଅଫିସରଠାରୁ ଶୁଣିଲେ ଯେ ଉଇକହାମ୍ ଲିଡ଼ିଆକୁ ବିବାହ କରିବାକୁ ଆଦୌ ଇଚ୍ଛୁକ ନାହିଁ—ସ୍କଟଲଣ୍ଡକୁ ପଳାନ୍ତା କାହିଁକି ? କର୍ଣ୍ଣେଲ ଫଷ୍ଟରଙ୍କ ଅନୁସନ୍ଧାନରୁ ସେମାନେ ଲଣ୍ଡନ ଯାଇଥିବାର ପ୍ରମାଣ ମିଳିଲା । କିନ୍ତୁ ତାପରେ କୁଆଡ଼େ ଯାଇଥିବାର ଜଣାଗଲା ନାହିଁ । ଆମର ମନକଷ୍ଟ ବୁଝିପାରୁ ।

ସମ୍ଭବା ଧାରନହ୍ୱାମ୍‌ଙ୍କର ସେପରି କଲ୍ପନା ଥାଏ, ଲିଡ୍‌ଆ କଅଣ ଏଭଳି କାର୍ଯ୍ୟ କରିବ ? ସେମାନେ ବୋଧହୁଏ କରୁଛନ୍ତି ବୋଲି କର୍ଣ୍ଣେଲ ଫଷ୍ଟର ଆଦୌ ବିଶ୍ୱାସ କରୁନାହାନ୍ତି । ମା'ଆ ଚିନ୍ତାରେ ବିଛଣା ଧରିଲେଣି । ବାପା ମଧ୍ୟ ବିଚଳିତ ହୋଇପଡ଼ିଛନ୍ତି । ତୁମେମାନେ ଶୀଘ୍ର ଏଠାକୁ ଚାଲିଆସିବା ଉଚିତ । ବାପା ଲିଡ୍‌ଆକୁ ଖୋଜିବା ପାଇଁ ଫଷ୍ଟରଙ୍କ ସଙ୍ଗେ ଯାଉଛନ୍ତି । ଏଠାରେ ମଉସା ମାଉସୀ ( ମିଃ ଓ ମିସେସ୍ ଗାର୍ଡିନର )ଙ୍କର ସାହାଯ୍ୟ ନିତାନ୍ତ ଦରକାର ।"

ଚିଠି ଦୁଇ ଖଣ୍ଡି ପଢ଼ିସାରିଲେ ମାତ୍ରେ ସେ ତତ୍‌କ୍ଷଣାତ୍ ଲଙ୍ଗବୋର୍ଣ୍ଣକୁ ଯିବାକୁ ସ୍ଥିର କରି ମି. ଗାର୍ଡିନରଙ୍କୁ ଖୋଜିବାକୁ ବାହାରିଲେ । କିନ୍ତୁ ଠିକ୍ ଦୁଆର ମୁହଁରେ ମି. ଡାର୍‌ସିଙ୍କୁ ଦେଖି ସେ ରହିଗଲେ । ଏଲିଜାବେଥ୍‌ଙ୍କର ବିଷର୍ଣ୍ଣ ମୁହଁ ଓ ବିଚଳିତ ଅବସ୍ଥା ଲକ୍ଷ୍ୟ କରି ଡାର୍‌ସି ବିସ୍ମିତ ହେଲେ । ଏଲିଜାବେଥ୍ ସଙ୍ଗେ ସଙ୍ଗେ କହିଲେ, "ମୋତେ କ୍ଷମା କରନ୍ତୁ ; ମୁଁ ଗୋଟାଏ କାର୍ଯ୍ୟରେ ବାହାରିଛି । ଅପେକ୍ଷା କରି ପାରିବି ନାହିଁ । ଗୋଟାଏ ଜରୁରି କାମରେ ମୋତେ ଏହିକ୍ଷଣି ମି. ଗାର୍ଡିନରଙ୍କ ସଙ୍ଗେ ଦେଖା କରିବାକୁ ହେବ ।"

ମି· ଡାର୍‌ସି କହିଲେ, "କଥା କଅଣ ? ତୁମ ଦେହ ଭଲ ନଥିବା ପରି ଜଣାଯାଉଛି । ଯିବ କିପରି ? ଜଣେ ଚାକର ଯାଇ ତାଙ୍କୁ ଡାକିଆଣୁ ।"

ଏଲିଜାବେଥ୍ ଜଣେ ଚାକରକୁ ଡାକି ମିଷ୍ଟର ଓ ମିସେସ୍ ଗାର୍ଡିନରଙ୍କୁ ସଙ୍ଗେ ସଙ୍ଗେ ଆସିବାପାଇଁ ଖବର ପଠାଇଲେ । ଚାକର ବାହାରିଗଲା ଓ ସେ ବସିପଡ଼ିଲେ । ତାଙ୍କର ଏପରି ଅବସ୍ଥାରେ ଡାର୍‌ସି ତାଙ୍କୁ ଛାଡ଼ି ଯିବେ କିପରି ? ସେ କହିଲେ, "ମୁଁ ଚାକରାଣୀକୁ ଡାକି ଦେଉଛି । ତୁମ ଦେହ ବଡ଼ ଖରାପ । ବୋଧହୁଏ ସାମାନ୍ୟ କିଛି ପିଇଲେ ଭଲ ହେବ ।"

"ଦରକାର ନାହିଁ । ତୁମକୁ ଧନ୍ୟବାଦ । ମୋର ଦେହ ଖରାପ ନାହିଁ । ଘରୁ ଗୋଟାଏ ଦୁଃସମ୍ବାଦ ପାଇ ମୁଁ ବିଚଳିତ ହୋଇପଡ଼ିଛି ।"

ଏହା କହୁ କହୁ ସେ କାନ୍ଦିପକାଇଲେ । ଡାର୍‌ସି ସହାନୁଭୂତି ଦେଖାଇ ନୀରବରେ ତାଙ୍କୁ ଚାହିଁରହିଲେ । କିଛି ସମୟ ପରେ ଏଲିଜାବେଥ୍ କହିଲେ,

"ବର୍ତ୍ତମାନ ମୁଁ କେନ୍‌ଠାରୁ ଚିଠି ପାଇଲି ଯେ ମୋର ସାନ ଭଉଣୀ ଆମ ସମସ୍ତଙ୍କୁ ଛାଡ଼ି ଜଣକ ସାଥିରେ ପଳାଇ ଯାଇଛି । ସେ ଜଣକ ହେଉଛି ଉଇକହାମ୍ । ଦୁହେଁ ସାଙ୍ଗ ହୋଇ ପଳାଇ ଯାଇଛନ୍ତି । ତୁମେ ଉଇକ୍‌ହାମ୍‌ଙ୍କୁ ଜାଣ । କଅଣ ହେବ ଅନୁମାନ କରିପାରୁଥିବ । ଲିଡ଼ିଆ ପାଖରେ ଧନ ନାହିଁ, ବନ୍ଧୁବାନ୍ଧବ ନାହାନ୍ତି; କିଛି ନାହିଁ । ତେଣୁ ଉଇକହାମ୍ ତାକୁ ବିବାହ କରିବା ବିଷୟରେ ମୋର ସନ୍ଦେହ । ହାୟ, ଲିଡ଼ିଆର ସର୍ବନାଶ ହେଲା । ସେ ଆଗରୁ ଚେଷ୍ଟା କରିଥିଲେ ଏପରି ଘଟିନଥାନ୍ତା ।"

ଡାର୍‌ସି କହିଲେ, "ମୁଁ ଏ ଘଟଣାରେ ନିତାନ୍ତ ଦୁଃଖିତ । କିନ୍ତୁ କଥାଟା ପୂରା ସତ ବୋଲି ଜାଣିଛ ?"

"ହିଁ, ଦୁହେଁ ଯାକ ରବିବାର ସକାଳେ ବ୍ରାଇଟନରୁ ବାହାରିଛନ୍ତି । ସେମାନେ ଲଣ୍ଡନ ପର୍ଯ୍ୟନ୍ତ ଯାଇଥିବାର ପ୍ରମାଣ ମିଳିଛି । ତେଣିକି ଯାଇଛନ୍ତି କି ନା ଜଣାପଡ଼ି ନାହିଁ । ମୋର ଦୃଢ଼ ବିଶ୍ୱାସ ସେମାନେ ବିବାହ ଉଦ୍ଦେଶ୍ୟରେ ସ୍କଟଲଣ୍ଡ ଯାଇନାହାନ୍ତି ।"

"ତାକୁ ଫେରାଇ ଆଣିବା ପାଇଁ କି ଉଦ୍ୟମ ହୋଇଛି ?"

"ବାପା ଲଣ୍ଡନ ଯାଇଛନ୍ତି । ଦାଦାଙ୍କର (ମିଃ ଗାର୍ଡିନର) ସାହାଯ୍ୟ ମାଗି ଅପା ଚିଠି ଦେଇଛନ୍ତି । କିନ୍ତୁ କିଛି କରିହେବ ବୋଲି ମୋର ଆଶା ନାହିଁ । ସେମାନଙ୍କୁ ଖୋଜି କିପରି ବାହାର କରିଯିବ ? ଅବସ୍ଥା ବଡ଼ ସାଂଘାତିକ ।"

ଡାର୍‌ସି ଘର ଭିତରେ ପାଦଚାରଣ କରି ବୁଲିବାକୁ ଲାଗିଲେ । ଏଲିଜାବେଥ୍ ତାଙ୍କୁ ଚାହିଁ ଭାବିଲେ, "ମିଃ ଡାର୍‌ସି କଅଣ ଭାବୁଥିବେ ? ଏ ତ ଆମ କୁଳର ଏକ କଳଙ୍କ ! ସେ ଯଦି ମୋତେ ଘୃଣା କରନ୍ତି, ତେବେ ତାଙ୍କର ଦୋଷ କଅଣ ?"

ଲିଡ଼ିଆ ପରିବାର ଉପରକୁ ଯେଉଁ ଦୁଃଖ, ଲଜ୍ଜା, ଅପମାନ ଆଣିଥିଲା, ତାହା ଆଗରେ ଏଲିଜାବେଥ ନିଜ ଦୁଃଖ କଥା ଭାବିବେ କଅଣ ? ସେ ରୁମାଲରେ ମୁହଁକୁ ଘୋଡ଼ାଇ ବସିରହିଲେ । କିଛି ସମୟ ପରେ ମିଃ ଡାର୍‌ସି କହିଲେ, "ତୁମର ଏ ବିପଦରେ କିଛି ସାହାଯ୍ୟ କରିପାରିଲେ ମୁଁ ଧନ୍ୟ ହେବି । କିନ୍ତୁ ବୃଥା ଆଶା ଦେଇ ମୁଁ ତୁମକୁ ଦୁଃଖ ଦେଇ ନପାରେ । ବୋଧହୁଏ, ଆଜି ତୁମେ ପେମ୍‌ବର୍ଲିର ନିମନ୍ତ୍ରଣ ରକ୍ଷା କରି ପାରିବ ନାହିଁ ।"

"ହଁ, ମନେପଡ଼ିଲା । ଦୟାକରି ମିସ୍ ଡାର୍ସିଙ୍କୁ ଜଣାଇ ଦେବ, ଜରୁରି କାମରେ ମୁଁ ଘରକୁ ଚାଲି ଯାଉଛି । ପ୍ରକୃତ କାରଣଟା ତାଙ୍କୁ କହିବ ନାହିଁ । କିନ୍ତୁ ଘଟଣାଟା ଯେ ବେଶି ଦିନ ଲୁଚି ରହିପାରିବ ତାହା ନୁହେଁ ।"

"ଏ ଘଟଣା ମୁଁ କାହାରି ଆଗେ କେବେହେଲେ ପ୍ରକାଶ କରିବି ନାହିଁ । ବର୍ତ୍ତମାନ ମୁଁ ପ୍ରତିକାରର କିଛି ଆଶା ଦେଖିପାରୁନାହିଁ । କିନ୍ତୁ ଆଶା କରୁଛି, ଏହାର ପରିଣାମ ସୁଖକର ହେବ ।" ଏତିକି କହି ମି: ଡାର୍ସି ବିଦାୟ ନେଇ ଗଲେ ।

ଏଲିଜାବେଥ ଭାବିଲେ, ଏ ଘଟଣା ଜାଣିବା ପରେ ଡାର୍ସି ଆଉ ତାଙ୍କ ସହିତ କଥାବାର୍ତ୍ତା ସୁଦ୍ଧା କରିବେ ନାହିଁ । ସେ ପୂର୍ବ ଘଟଣା ସବୁ ମନେ ପକାଇଲେ । ଦିନେ ସେ ତାଙ୍କୁ ବିବାହ କରି ସୁଖରେ ରହି ପାରିଥାନ୍ତେ । କିନ୍ତୁ ସେ ତାଙ୍କ ପ୍ରତ୍ୟାଖ୍ୟାନ କରି ତାଙ୍କଠାରୁ ଦୂରେଇ ଯାଇଥିଲେ । ଏବେ ଲିଡ଼ିଆର ପଳାୟନ ପରେ ଦୁହିଁଙ୍କ ଭିତରେ ଦୂରତ୍ୱ ବଢ଼ିଗଲା ମାତ୍ର । ଜେନ୍‌ଙ୍କ ଛଡ଼ା ଆଉ କେହି ବିଶ୍ୱାସ କରି ନଥିବେ ଯେ ଉଇକ୍‌ହାମ୍ ଲିଡ଼ିଆକୁ ବିବାହ କରିବେ । ପ୍ରଥମ ଚିଠିରୁ ଏଲିଜାବେଥ୍ ମନେକରିଥିଲେ, ଉଇକ୍‌ହାମ୍ ଗରିବ ଝିଅକୁ ବିବାହ କରିବେ ନାହିଁ । ଲିଡ଼ିଆ କିପରି ଉଇକ୍‌ହାମଙ୍କ ଆକର୍ଷଣ କଲା, ସେ ବୁଝି ପାରି ନଥିଲେ । ବୋଧହୁଏ ଲିଡିଆର କିଛି ବିଶେଷ ଗୁଣ ଥିବ । ବିବାହ ପ୍ରସ୍ତାବ ନଥିଲେ ଲିଡ଼ିଆ କଦାପି ଉଇକ୍‌ହାମଙ୍କ ସଙ୍ଗରେ ପଳାଇ ଯାଇ ନଥାନ୍ତା । ଏସବୁ ସତ୍ତ୍ୱେ ଏଲିଜାବେଥଙ୍କର ଧାରଣା ହେଲା, ଲିଡ଼ିଆକୁ ଦୁର୍ନାମରୁ ରକ୍ଷା କରିବାର ଉପାୟ ନାହିଁ ।

ଖବର ପାଇ ମିଷ୍ଟର ଓ ମିସେସ୍ ଗାର୍ଡ଼ିନର ଘରକୁ ଫେରି ଆସିଲେ । ଏଲିଜାବେଥ ଚିଠି ଦୁଇ ଖଣ୍ଡି ପଢ଼ି ଶୁଣାଇଦେଲେ । ସେମାନେ ନିତାନ୍ତ ବିସ୍ମିତ ଓ ଦୁଃଖିତ ହେଲେ । ମି· ଗାର୍ଡ଼ିନର ଯଥାସମ୍ଭବ ସାହାଯ୍ୟ କରିବେ ବୋଲି ଆଶ୍ୱାସନା ଦେଲେ । ସଙ୍ଗେ ସଙ୍ଗେ ତିନିହେଁ ଯାକ ଲଙ୍ଗବୋର୍ଣ୍ଣକୁ ଯିବାର ବ୍ୟବସ୍ଥା ହେଲା । ଘଣ୍ଟାକ ମଧ୍ୟରେ ସେମାନେ ଗାଡ଼ିରେ ବସି ଲଙ୍ଗବୋର୍ଣ୍ଣ ଅଭିମୁଖରେ ଚାଲିଲେ ।

# ଲିଡ଼ିଆର ହାଲଚାଲ

ସେମାନେ ବାଟରେ ରାତିଟିଏ କଟାଇ ପରଦିନ ଦୁଇ ପହର ବେଳକୁ ଘରେ ପହଞ୍ଚିଲେ । ଗାଡ଼ି ଆସୁଥିବାର ଦେଖି ପିଲାମାନେ ଦଉଡ଼ିଗଲେ ।

ଏଲିଜାବେଥ ଓହ୍ଲାଇପଡ଼ି ପିଲାମାନଙ୍କୁ ଆଦରରେ ଚୁମ୍ବନ କଲେ ଓ ଜେନଙ୍କ ନିକଟକୁ ଚାଲିଗଲେ । ଲୋତକପୂର୍ଣ୍ଣ ଚକ୍ଷୁରେ ଦୁହେଁ ପରସ୍ପରକୁ ଆଲିଙ୍ଗନ କଲେ । ଏଲିଜାବେଥ ପଚାରିଲେ, "ଲିଡ଼ିଆର କିଛି ଖବର ମିଳିଛି ?"

ଜେନ୍ ଉତ୍ତର କଲେ, "ନା, କିଛି ମିଳି ନାହିଁ, କିନ୍ତୁ ମଉସା (ମି. ଗାର୍ଡିନର) ଆସିଗଲେଣି । ସେ କିଛି କରିପାରିବେ । ବାପା ଲଣ୍ଡନରେ ଅଛନ୍ତି । କିଛି ସନ୍ଧାନ ମିଳିଲା ମାତ୍ରେ ସେ ଚିଠି ଦେବେ ବୋଲି କହି ଯାଇଛନ୍ତି ।"

"ମାଆଙ୍କ ଦେହ କିପରି ? ତୁମେମାନେ ସବୁ କିପରି ଅଛ ?"

"ମାଆଙ୍କ ମନ ଭଲ ନାହିଁ, କିନ୍ତୁ ଦେହ ଭଲ ଅଛି । ସେ ଉପର ମହଲାରେ ଅଛନ୍ତି । ତୋତେ ଦେଖିଲେ ଖୁସି ହେବେ । ସେ ଘରୁ ବାହାରୁ ନାହାନ୍ତି । ଆମେ ସବୁ ଭଲଅଛୁ ।"

ଜେନ୍ ପିଲାମାନଙ୍କ ସଙ୍ଗେ ମଉସା ମାଉସୀଙ୍କୁ ସ୍ୱାଗତ ଜଣାଇଲେ । ଜେନ୍‌ଙ୍କଠାରୁ କିଛି ନୂଆ ଖବର ମିଳିଲା ନାହିଁ ସତ, କିନ୍ତୁ ଶେଷ ପରିଣତି ଭଲ ହେବ ବୋଲି ଜେନ୍‌ଙ୍କର ଦୃଢ଼ ଆଶା ଥିଲା ।

ସମସ୍ତେ ମିସେସ୍ ବେନେଟ୍‌ଙ୍କ କୋଠରୀକୁ ଗଲେ । ସେ କାନ୍ଦି କାନ୍ଦି ସେମାନଙ୍କୁ ସ୍ୱାଗତ ଜଣାଇଲେ । ତତ୍ପରେ ସେ ୱିକ୍‌ହାମଙ୍କର ଅସଦାଚରଣ ବର୍ଣ୍ଣନା କରିବାକୁ ଲାଗିଲେ । ତାଙ୍କ ମତରେ ସମସ୍ତେ ଦୋଷୀ; ସେ ଏକା ନିର୍ଦ୍ଦୋଷ । ସେ କହିଲେ, "ମି. ଫର୍ଷ୍ଟର ଓ ତାଙ୍କ ସ୍ତ୍ରୀ ଲିଡ଼ିଆକୁ ଆଖି ଆଗରୁ ଛାଡ଼ିଦେଲେ କାହିଁକି ? ଏଇଟା ସେମାନଙ୍କର ଅନ୍ୟାୟ । ମୁଁ ଜାଣେ, ସେମାନେ ତାର ଯତ୍ନ ନେବାକୁ ଅଯୋଗ୍ୟ । ମୋ କଥା କେହି ଶୁଣିଲେ ନାହିଁ । ମି. ବେନେଟ୍ ଯାଇଛନ୍ତି । ୱିକହାମକୁ ଦେଖିଲେ ସେ ନିଶ୍ଚୟ ତାକୁ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ

ଡାକବେ । ଏଭଳି ଯୁଦ୍ଧରେ ସେ ପ୍ରାଣ ଯେଜ ଫେରିବେ ନାହିଁ । ତାଙ୍କ ମୃତ୍ୟୁ ପରେ ପରେ ମିଃ କଲିନ୍ସ ଆମକୁ ଏ ଘରୁ ଘୁଷ୍ଟା ଡଡ଼ି ବାହାର କରି ଦେବେ । ଭାଇ, ତୁମେ ସାହା ନ ହେଲେ କଅଣ କରିବୁ ବୁଦ୍ଧି ଦଶୁ ନାହିଁ ।"

ଏପରି ଆଶଙ୍କାର କାରଣ ନାହିଁ ବୋଲି ସମସ୍ତେ ମତ ଦେଲେ । ମି. ଗାର୍ଡ଼ିନର କହିଲେ, "ମୁଁ କାଲି ଲଣ୍ଡନ ଯାଇ ଲିଡ଼ିଆକୁ ଖୋଜ ବାହାର କରିବାରେ ମି. ବେନେଟ୍‌ଙ୍କୁ ସାହାଯ୍ୟ କରିବି । ଲଣ୍ଡନରେ ପହଞ୍ଚି ଆମେ ଶଳା ଭିଣୋଇ ପରାମର୍ଶ କରି ଯାହା କିଛି କରିବୁ ।"

ମିସେସ୍ ବେନେଟ୍ କହିଲେ, "ମୁଁ ତୁମଠାରୁ ଠିକ୍ ତାହାହିଁ ଆଶା କରେ । ଦେଖିବ, ମିଃ ବେନେଟ୍ ଯେପରି ୱିକହାମ ସଙ୍ଗେ ଯୁଦ୍ଧ କରିବାକୁ ବାହାରି ନପଡ଼ନ୍ତି । ମୁଁ କିପରି ଦୁଃଖରେ ଅଛି, ତାଙ୍କୁ କହିବ । ଆଉ ଲିଡ଼ିଆକୁ କହିବ, ମୋ ସଙ୍ଗେ ପରାମର୍ଶ ନକରି ବିବାହ ପାଇଁ ପୋଷାକ କିଣିବ ନାହିଁ । ଆଗେ ବିବାହ ହୋଇଗଲେ ପୋଷାକ କିଣିବା ପାଇଁ ଯେତେ ଟଙ୍କା ଦରକାର ମୁଁ ଦେବି ।" ଉପରଓଳି ଲିଡ଼ିଆ ମି. ଫଷ୍ଟରଙ୍କୁ ଲେଖିଥିବା ଚିଠି ଖଣ୍ଡିକ ଜେନ୍ ଏଲିଜାବେଥଙ୍କୁ ଦେଖାଇଲି । ସେଥିରେ ଲେଖାଥିଲା—

"ମୁଁ କୁଆଡେ ଯାଉଛି ଜାଣିଲେ ତୁମେ ନ ହସି ରହି ପାରିବ ନାହିଁ । କାଲି ସକାଳକୁ ତୁମେ କେଡ଼େ ବିସ୍ମିତ ହେବ ମୁଁ ଅନୁମାନ କରୁଛି । ମୁଁ ସ୍କଟଲଣ୍ଡର ଗ୍ରେଟ୍‌ନାଗ୍ରୀନକୁ ଜଣେ ଭଦ୍ରଲୋକଙ୍କ ସଙ୍ଗେ ଯାଉଛି । ତାଙ୍କୁ ମୁଁ ପ୍ରାଣ ଦେଇ ଭଲ ପାଏ । ସେ ମନୁଷ୍ୟ ନୁହନ୍ତି ଯେ ଦେବତା । ତାଙ୍କୁ ନ ପାଇଲେ ମୁଁ ବଞ୍ଚି ପାରିବି ନାହିଁ । ମୁଁ ସ୍କଟଲଣ୍ଡକୁ ଯିବା ବିଷୟ ଆମ ଘରକୁ ଜଣାଇବ ନାହିଁ । ମୁଁ ବିଭା ହୋଇ ଲିଡ଼ିଆ ୱିକହାମ ନାମରେ ଚିଠି ଦେଇ ଘରେ ସମସ୍ତଙ୍କୁ ଚକିତ କରିଦେବି । ଲଙ୍ଗବୋର୍ଣ୍ଣକୁ ଫେରିଲି ପରେ ତୁମ ଘରୁ ମୋର ପୋଷାକ ମଗାଇ ନେବି । ସେଥିରେ ଥିବା ଚିରାଟାକୁ ମରାମତ କରାଇ ଦେବ ।"

ଏଲିଜାବେଥ ଚିଠିଟି ପଢ଼ି କହିଲେ, "କି ଅବିବେକର କାର୍ଯ୍ୟ । ଯାହାହେଉ ଏଥିରୁ ଏତିକି ଜଣାପଡୁଛି ଯେ ବିବାହ କରିବାକୁ ସେ ନିଶ୍ଚୟ ମନସ୍ଥ କରିଛି । ବାପାଙ୍କ ମନରେ କି କଷ୍ଟ ହୋଇ ନଥିବ ?"

ଜେନ୍ କହିଲେ, "ଚିଠିଟି ପଢ଼ି ବାପା ଦଶ ମିନଟ ଯାଏ ସ୍ତମ୍ଭୀଭୂତ ହୋଇ ରହିଗଲେ । ମାଆ ସଙ୍ଗେ ସଙ୍ଗେ ବିଛଣା ଧରିଲେ । ବାପା ଯିବା ପରେ ମିସେସ୍ ଫିଲିପ୍‌ସ କେତେ ଦିନ ପାଇଁ ଆସିଥିଲେ । ସେ ଆମମାନଙ୍କୁ ଆଶ୍ୱାସନା ଦେଲେ । ଲେଡ଼ି ଲିଉକାସ୍ ଆମମାନଙ୍କ ପ୍ରତି ଖୁବ୍ ଦୟା ଦେଖାଇଅଛନ୍ତି । ଆମକୁ ସହାନୁଭୂତି ଦେଖାଇବା ପାଇଁ ସେ ଏପର୍ଯ୍ୟନ୍ତ ଗୁଲ ଗୁଲ ଆସିଥିଲେ ।"

## ମିଃ ବେନେଟଙ୍କ ଅନୁତାପ

ମିସେସ୍ ଗାର୍ଡ଼ିନର ତାଙ୍କ ପିଲାମାନଙ୍କ ସହିତ ଆଉ କିଛି ଦିନ ହାର୍ଟଫୋର୍ଡ଼ଶାୟାରରେ ରହିଲେ । ସେ, ଜେନ୍ ଓ ଏଲିଜାବେଥ ମିସେସ୍ ବେନେଟ୍‌ଙ୍କ ସେବାଶୁଶ୍ରୂଷା କରୁଥାନ୍ତି । ଜେନ୍‌ଙ୍କର ଆଉ ଜଣେ ମାଉସୀ ମଝିରେ ମଝିରେ ଆସନ୍ତି; ସେମାନଙ୍କୁ ସାହସ ଦିଅନ୍ତି । ସେ ଯେତେ ଥର ଆସୁଥିଲେ, ଉଇକ୍‌ହାମଙ୍କ ବିଷୟରେ କିଛି ନା କିଛି ନୂଆ ଖବର ଶୁଣାଉ ଥିଲେ । ସେଥିରୁ ଉଇକ୍‌ହାମଙ୍କର କେବଳ ଦୁର୍ଗୁଣ ପ୍ରକାଶପାଉଥିଲା ।

ତିନି ମାସ ତଳେ ଏହି ଉଇକ୍‌ହାମ ମେରିଟନରେ ଜଣେ ଆଦର୍ଶ ପୁରୁଷ ରୂପେ ବିବେଚିତ ହେଉଥିଲେ; କିନ୍ତୁ ଏବେ ସେ ସମସ୍ତଙ୍କର ଘୃଣାର ପାତ୍ର । ସେ ସବୁ ଦୋକାନୀଙ୍କଠାରେ ଧାରୁଆ ଅଛନ୍ତି, ତାଙ୍କ ଋଣର ସୀମା ନାହିଁ, ଜଗତରେ ତାଙ୍କ ଭଳି କଦର୍ଯ୍ୟ ଲୋକ ନଥିବ, ଏହିପରି ମନ୍ତବ୍ୟ ଶୁଣାଗଲା । ସମସ୍ତଙ୍କର ମତ ସେ ବାହ୍ୟ-ବୈଭବ ଭଲ ବାହାରକୁ ଭଲ ଦିଶୁଥିଲେ ହେଁ ତାଙ୍କର ଭିତରଟା ନିତାନ୍ତ ଖରାପ ।

ମଙ୍ଗଳବାର ଦିନ ମିସେସ୍ ଗାର୍ଡ଼ିନର ସ୍ୱାମୀଙ୍କ ପାଖରୁ ଖଣ୍ଡିଏ ଚିଠି ପାଇଲେ । ସେଥିରୁ ଏତିକି ଜଣାଗଲା ଯେ ଲିଡ଼ିଆ ବା ଉଇକ୍‌ହାମ କାହାରି ସନ୍ଧାନ ମିଳିନାହିଁ; ମିଃ ବେନେଟ ଆଉ କିଛି ଦିନ ଲଣ୍ଡନରେ ରହିବେ ।

କିଛି ଦିନ ପରେ ମିଃ କଲିନ୍‌ସଙ୍କଠାରୁ ମିଃ ବେନେଟଙ୍କ ନାମରେ ଖଣ୍ଡିଏ ଚିଠି ଆସିଲା । ଜେନ୍ ଓ ଏଲିଜାବେଥ ବାପାଙ୍କ ଚିଠିଟି ଖୋଲି ପଢ଼ିଲେ । ସେଥିରେ ଲେଖାଥିଲା—

"ମୁଁ ତୁମର ଜଣେ ଆତ୍ମୀୟ ଓ ଧର୍ମ ଅନୁଷ୍ଠାନରେ ଅଛୁ । ତେଣୁ ତୁମ ଦୁଃଖରେ ଦୁଃଖିତ ହେବା ସ୍ୱାଭାବିକ । ମୁଁ ଓ ମୋର ସ୍ତ୍ରୀ ତୁମର ଏ ଘୋର ଦୁଃଖରେ ସହାନୁଭୂତି ପ୍ରକାଶ କରୁଛୁ । ତୁମର ଦୁଃଖ ଆମେ ବୁଝି ପାରୁଛୁ । ବୋଧହୁଏ, ଝିଅର ମୃତ୍ୟୁ ହୋଇଥିଲେ ଏତେ ଦୁଃଖ ହୋଇ ନଥାନ୍ତା । ଗୁର୍ଲେଁଟଙ୍କ ମତ ହେଉଛି, ଉପଯୁକ୍ତ ଶିକ୍ଷା ଅଭାବରୁ ତୁମ ଝିଅମାନଙ୍କର ସ୍ୱଭାବ ଖରାପ ହୋଇ ଯାଇଅଛି । ମୁଁ ଭାବୁଛି, ଲିଡ଼ିଆର ଦୋଷ ଶିକ୍ଷାଗତ ନୁହେଁ, ପ୍ରକୃତିଗତ । ତା ନୋହିଥିଲେ, ଏତେ ଅଳ୍ପ ବୟସରେ ସେ ଏଭଳି କାମ କରି ନଥାନ୍ତା । ଲେଡ଼ି କାଥେରିନ୍ ଓ ତାଙ୍କ ଝିଅଙ୍କର ମଧ୍ୟ ଏହି ମତ । ତାର ଏପ୍ରକାର ଆଚରଣର କୁଫଳ ତା ଭଉଣୀମାନଙ୍କୁ ମଧ୍ୟ ଭୋଗିବାକୁ ହେବ । ଏଭଳି ପରିବାରରେ କିଏ ବିବାହ କରିବାକୁ ଯିବ ? ଭାଗ୍ୟର କଥା, ମୁଁ ଏହି ବ୍ୟାପାରରେ ଜଡ଼ିତ ହୋଇ ଯାଉଥିଲି, କିନ୍ତୁ ରକ୍ଷା ପାଇ ଯାଇଅଛୁ । ମୋର ପରାମର୍ଶ ହେଉଛି, ଏ ଝିଅକୁ ଚିରଦିନ ପାଇଁ ତ୍ୟାଗ କରିଦିଅ । ସେ ତା ପାପର ଫଳ ଭୋଗୁଥାଉ ।"

ଶନିବାରେ ମି. ବେନେଟ ଘରକୁ ଫେରି ଆସିଲେ । ମି. ଗାର୍ଡ଼ିନର ଯଥାସାଧ୍ୟ ଚେଷ୍ଟା କରିବାକୁ ଲଣ୍ଡନରେ ରହିଲେ । ଯେଉଁ ଗାଡ଼ିରେ ମି. ବେନେଟ ଆସିଥିଲେ, ସେଇଥିରେ ବସି ମିସେସ୍ ଗାର୍ଡ଼ିନର ଓ ତାଙ୍କ ପିଲାମାନେ ଲଣ୍ଡନ ଚାଲିଗଲେ । ମି. ବେନେଟ ଲିଡ଼ିଆ ବା ଉଇକହାମ୍‌ଙ୍କ ବିଷୟରେ କିଛି ନ କହିବାରୁ ଗୃହାଗିଆ ବେଳେ ଏଲିଜାବେଥ୍ ସାହସ ବାନ୍ଧି ପଚାରିଲେ, "ଯେଉଁ କାମରେ ଯାଇଥିଲ, କଅଣ ହେଲା ?" ମି: ବେନେଟ ଉତ୍ତର କଲେ, "ସେ ବିଷୟରେ କିଛି କହିନା । ଏ ସବୁ ମୋର ଦୋଷ । ସେଥିପାଇଁ ମୋ ଛଡ଼ା ଆଉ କିଏ କଷ୍ଟ ଭୋଗିବ ?"

"ତୁମର ଦୋଷ କଅଣ ?"

"ତୁ ମୋତେ ସାବଧାନ କରିଦେଇଥିଲୁ । ମନୁଷ୍ୟର ସ୍ୱଭାବ ଯେ ଏତେ ଦୁର୍ବଳ ମୁଁ ଜାଣିନଥିଲି । ତୋ କଥା ମୁଁ ଶୁଣିଲି ନାହିଁ । ମୋର ଦୋଷ ମୁଁ ଏବେ ଦେଖିପାରୁଛି ।"

କେନ୍ ମାଆଙ୍କ ପାଇଁ ସୁଦ୍ଧା ରଖିଦେଇ କହିଲା, "ସମସ୍ତେ ଏକ ବାକ୍ସରେ ରହିଲେ କିଛି କଷ୍ଟ ଜଣାପଡ଼େ ନାହିଁ । ଆଜି ଲଡ଼ୁଆ ଯାହା କଲା କାଲି ମୁଁ ସେଇଆ କରିପାରେ । ତୁଏତ କଟି ଆଗେ ପଳାଇବ; ମୁଁ ତାପରେ ଯିବ ।"

ଏହା ଶୁଣି କଟି କହିଲା, "ମୁଁ କାହିଁକି ପଳାଇଯିବି ? ଯଦି କେବେ ମୁଁ ବ୍ରାଇଟନକୁ ଯାଏ, ମୁଁ ଲଡ଼ୁଆ ଭଳି କାମ କରିବ ନାହିଁ ।"

ମିଃ ବେନେଟ ରାଗିଯାଇ କହିଲେ, "ତୁ ବ୍ରାଇଟନକୁ ଯିବୁ ? ନା, ତା ହେବ ନାହିଁ । ମୁଁ ଯଥେଷ୍ଟ ଶିଖି ସାରିଲିଣି । କୌଣସି ଅଫିସରର ପାଦ ଆଉ ମୋ ଘରେ ପଡ଼ିବ ନାହିଁ । ତୁମେମାନେ ଏଣିକି କାହାରି ସହିତ ନାଚିପାରିବ ନାହିଁ । ନାଚିବାକୁ ଘରେ ତୁମେମାନେ ନାଚିପାର ।"

କଟି ଏହା ଶୁଣି କାନ୍ଦିପକାଇଲା ।

ମିଃ ବେନେଟ କହିଲେ, "ମନ ଦୁଃଖ କରୁଛୁ କାହିଁକି ? ଆଉ ଦଶବର୍ଷ ଯାଏ ତୁ ଘରେ ରହିଥା । ତୋର ସ୍ୱଭାବ ଭଲ ଦେଖିଲେ ମୁଁ ନିଜେ ତୋତେ ନେଇ ସୈନ୍ୟମାନଙ୍କର ପ୍ୟାରେଡ ଦେଖାଇ ଆଣିବି ।"

## ଲିଡ଼ିଆର ସନ୍ଧାନ

ମିଃ ବେନେଟ ଘରକୁ ଫେରି ଆସିବାର ଦୁଇଦିନ ପରେ ମିଃ ଗାର୍ଡ଼ିନରଙ୍କ-ଠାରୁ ଖଣ୍ଡିଏ ଚିଠି ପାଇଲେ । ସେ ଲେଖିଥିଲେ—

"ମୁଁ ଲଡ଼ୁଆ ଓ ଉଇକହାମ୍‌ଙ୍କର ଭେଟ ପାଇଲି । ସେମାନଙ୍କର ବିବାହ ହୋଇ ନାହିଁ, ବିବାହ ହେବା କାହାରି ଇଚ୍ଛା ବୋଲି ମୋତେ ବୋଧ ହେଲାନାହିଁ । କିନ୍ତୁ ସେ ଦୁହିଁଙ୍କର ଯେପରି ଶୀଘ୍ର ବିବାହ ହେବ, ସେଥିପାଇଁ ମୁଁ ତୁମ ପକ୍ଷରୁ କେତେକ ବିଷୟରେ ଜବାବ୍ ଦେଇଛି । ତୁମକୁ ସେହି ସର୍ତ୍ତ ଗୁଡ଼ିକ ପାଳନ କରିବାକୁ ହେବ । ତୁମର ମୃତ୍ୟୁ ପରେ ତୁମ ଝିଅମାନେ ଯେଉଁ ପାଞ୍ଚ ହଜାର ପାଉଣ୍ଡ ପାଇବାର କଥା, ସେଥିରେ ଲଡ଼ୁଆର ସମାନ ଅଂଶ ରହିବ । ଜୀବଦ୍ଦଶାରେ ତୁମେ ତାକୁ ବାର୍ଷିକ ଶହେ ପାଉଣ୍ଡ ଲେଖାଏଁ ଦେବ । ତୁମ ପକ୍ଷରୁ ମୁଁ ଏ ଦୁଇଟି ସର୍ତ୍ତରେ ରାଜି ହୋଇ ଯାଇଛି । ଏହି ଟଙ୍କା କିଛି

କଠିନ ନୁହେଁ । ବରଂ ଏଥିରୁ ଜଣାଯାଉଛି, ଉଇକହାମ ସେପରି କିଛି ଅର୍ଥାଭାବରେ ପଡ଼ି ନାହାନ୍ତି । ମୁଁ ଦେଖୁଛି, ଏତିକରେ ତାଙ୍କର ଦେଣା ପରିଶୋଧ ଯାଇ କିଛି ବଳିପାରେ । ଏ ପତ୍ର ପାଇଲା ମାତ୍ରେ ତୁମର ସମ୍ମତି ଜଣାଇଲେ ମୁଁ ଓକିଲଙ୍କ ପରାମର୍ଶରେ ତଦନୁସାରେ କାଗଜ ପତ୍ର ପ୍ରସ୍ତୁତ କରାଇ ନେବି । ତୁମର ଏଠାକୁ ଆସିବା ଦରକାର ନାହିଁ । ତୁମେ ମୋ ଉପରେ ନିର୍ଭର କରି ଘରେ ରହିପାର । ତୁରନ୍ତ ସମ୍ମତି ଜଣାଇ ପତ୍ର ଦେବ ।"

ଜେନ୍ ଓ ଏଲିଜାବେଥ ବାପାଙ୍କ ଚିଠି ପଢ଼ି ଆନନ୍ଦରେ ଅଧୀର ହୋଇ ଉଠିଲେ । ଜେନ୍ କହିଲା, "ଉଇକହାମଙ୍କୁ ଆମେ ଯେତେ ଖରାପ ଲୋକ ମନେକରିଥିଲୁ, ସେ ତା ନୁହନ୍ତି ।"

ଏଲିଜାବେଥ କହିଲା, "ବାପା, ତୁମେ ଏ ଚିଠିର ଉତ୍ତର ଦେଇ ସାରିଲଣି ତ !"

ମି: ବେନେଟ—"ନା, ବର୍ତ୍ତମାନ ଉତ୍ତର ଲେଖିବି ।"

ଏଲିଜାବେଥ—"ଆଉ ବାପା, ଏଡ଼େ ଜରୁରି କଥାରେ ଡେରି କାହିଁକି ?'

ଜେନ —"ବାପା, ତୁମକୁ ଲେଖିବାକୁ କଷ୍ଟ ହେବ । ତୁମେ ଡ଼ାକ, ମୁଁ ଲେଖିଦେଉଛି ।"

ଏଲିଜାବେଥ ପଚାରିଲେ, "ଏହି ସର୍ତ୍ତରେ ସମ୍ମତି ଅଛି ବୋଲି ଲେଖିବ ତ !"

"ସେକଥା ପଚାରୁଛୁ ? ସେ ଯେ ଏତେ ସାମାନ୍ୟ ଚାହିଁଛି ତାହାହିଁ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।"

"ସେ ଲିଡ଼ିଆକୁ ବିବାହ କରିବେ । କିନ୍ତୁ ସେ ଜଣେ ଭୀଷଣ ଲୋକ ।"

"ହଁ, ସେ ଦୁହିଁଙ୍କର ବିବାହ ନିଶ୍ଚୟ ହେବ, ତା ଛଡ଼ା ଅନ୍ୟ ପନ୍ଥା ନାହିଁ । କିନ୍ତୁ ମୁଁ ଯୋଡ଼ିଏ କଥା ଜାଣିବାକୁ ଚାହେଁ । ଏ ବ୍ୟବସ୍ଥା କରିବାକୁ ମି· ଗାର୍ଡ଼ିନର କେତେ ଟଙ୍କା ଖରଚ କରିଛନ୍ତି ? ଦ୍ୱିତୀୟତଃ ତାଙ୍କ ଟଙ୍କା ମୁଁ ସୁଝିବି କିପରି ?"

"ଟଙ୍କା ? ମୁଁ କିଛି ବୁଝି ପାରୁ ନାହିଁ ।"

"ଏତିକି ବୁଝି ହେଉନାହିଁ । ମୁଁ ବଞ୍ଚିଥିବା ଯାକେ ବର୍ଷକୁ ଶହେ

ପାଉଣ୍ଡ ଲେଖାଏଁ ଦେବ । ଏଇ ସାମାନ୍ୟ ଟଙ୍କା ପାଇଁ କେଉଁ ବୁଦ୍ଧିମାନ୍ ଲୋକ ଲଡ଼ିଆକୁ ବିବାହ କରନ୍ତି ।?"

ଏଲିଜାବେଥ କହିଲେ, "ହଁ, ସତ କଥା । ପୁଣି ସେଥିକରେ ତାଙ୍କର କରଜ ସୁଝାଯାଇ କିଛି ବଳିବ ! ମିଃ ଗାର୍ଡିନର ନିଶ୍ଚୟ କିଛି କୌଶଳ କରିଥିବେ । ମୋର ସନ୍ଦେହ, ସେ ଏଥିପାଇଁ ଅନେକ ଟଙ୍କା ଖରଚ କରିଥିବେ ।"

ମିଃ ବେନେଟ କହିଲେ, "ଯଦି ପ୍ରକୃତରେ ଉଇକହାମ୍ ଦଶ ହଜାର ପାଉଣ୍ଡରୁ କମ୍‌ରେ ଲଡ଼ିଆକୁ ବିବାହ କରିବାକୁ କହିଥାନ୍ତି, ତେବେ ମୁଁ ତାଙ୍କୁ ନିର୍ବୋଧ ବୋଲି କହିବି ।"

ଏଲିଜାବେଥ—ଦଶ ହଜାର ପାଉଣ୍ଡ ! ତାର ଅଧା ସୁଝା ସୁଝିବାର ଉପାୟ ଦେଖାଯାଉନାହିଁ ।

ଜେନ୍—ତାଙ୍କର ଯଦି ପ୍ରକୃତରେ ଲଡ଼ିଆ ପ୍ରତି ସେପରି ସ୍ନେହ ନ ଥାନ୍ତା, ତେବେ ସେ କାହିଁକି ବିବାହ କରିବାକୁ ରାଜି ହୋଇଥାନ୍ତେ ! ମଉସା ଅବଶ୍ୟ କିଛି ସାହାଯ୍ୟ କରିଥିବେ, ପ୍ରବର୍ତ୍ତାଇ ଥିବେ; କିନ୍ତୁ ଦଶ ହଜାର ପାଉଣ୍ଡ ଦେଇଥିବେ ବୋଲି ମୁଁ ବିଶ୍ୱାସ କରି ପାରୁ ନାହିଁ । ତାଙ୍କର ପିଲାଝିଲା ଅଛନ୍ତି; ସେ ଦଶ ହଜାର ପାଉଣ୍ଡ ଦେବେ କାହିଁ ?

ଏଲିଜାବେଥ—ଏବେ ଲଡ଼ିଆ ଆସି ଦାଦା ଖୁଡ଼ୀଙ୍କ ପାଖରେ ଥିବ । ସେ ବଡ଼ ଅନୁତାପ କରୁଥିବ ।

ଜେନ୍—ଗଲା କଥା ଆମେ ଭୁଲିଯିବା ଦରକାର । ପରମେଶ୍ୱର ସ୍ନେହରେ ସେ ଦୁହିଁଙ୍କର ଜୀବନ ସୁଖମୟ ହେଉ; ଅତୀତକୁ ଭୁଲି ଯାଇ ଶାନ୍ତିରେ ରହନ୍ତୁ ।

ଏଲିଜାବେଥ—ସେ ଦୁହେଁ ଯାହା କଲେ ତାହା କି କେହି ଭୁଲି ପାରିବ ? ସେ କଥା ବିଚାର କରିବାରେ ଲାଭ ନାହିଁ ।

ଦୁଇ ଭଉଣୀ ଚିଠି ଖଣ୍ଡିକ ନେଇ ମାଆଙ୍କ ପାଖକୁ ଗଲେ । ଆନନ୍ଦରେ ଅଧୀର ହୋଇ ମିସେସ୍ ବେନେଟ କହିଲେ, "ମୋ ଝିଅ ଯେ ବିଭା ହେବ ସେଇ ଯଥେଷ୍ଟ । ତାର ଭବିଷ୍ୟତ କଅଣ ହେବ, ମୁଁ ସେକଥା ଭାବୁନାହିଁ ।

ଷୋଳ ବର୍ଷରେ ତାର ବାହା ହୋଇଯିବ; କମ୍ କଥା ନୁହେ । ମୁଁ ଜାଣେ, ମିଃ ଗାର୍ଡିନର ସବୁ ଯୋଗାଡ଼ କରିଦେବେ । ଝିଅ ଜ୍ୱାଇଁଙ୍କୁ ଦେଖିବା ପାଇଁ ମୋ ମନ ଅଥୟ ହେଉଛି । ବାହାଘର ପୋଷାକ କଥା କଅଣ ହେବ ? ଆଜ ମୁଁ ସେ ବିଷୟରେ ମିସେସ୍ ଗାର୍ଡିନରଙ୍କୁ ଲେଖିବି । ଏଲିଜାବେଥ, ଯାଉ, ବାପାଙ୍କୁ ପଚାରିବା ସେ କେତେ ଟଙ୍କା ଦେଇପାରିବେ ।"

କିଛି ସମୟ ପରେ ସେ ପୁଣି କହିଲେ, "ଲିଜି, ମୁଁ ଯାଉଛି, ମେରି-ଟନ୍‌ରେ ଫିଲିପ୍‌ସଙ୍କୁ ଏ ଶୁଭ ଖବରଟା ଜଣାଇ ଦେଇ ଆସେ ।"

ମାଆଙ୍କର ଏଭଳି ଅଦ୍ଭୁତ ମନୋଭାବ ଦେଖି ଏଲିଜାବେଥ ନିଜ କୋଠରିକୁ ଚାଲିଗଲା । ଲିଡ଼ିଆର ଅବସ୍ଥା ଯେ ଖୁବ୍ ଭଲ ଥିଲା, ତାହା ନୁହେଁ; ଯାହା ଥିଲା ତାଠାରୁ କିଛି ଅଧିକ ଖରାପ ନଥିଲା, ଏତିକି ତାର ସୌଭାଗ୍ୟ ।

## ଝିଅ ଓ ଜ୍ୱାଇଁ

ଲିଡ଼ିଆ ଓ ଉଇକ୍‌ହାମଙ୍କର ସାମାଜିକ ଢଙ୍ଗରେ ବିବାହ ହେବ, ଏ ସମ୍ବାଦ ଆଖ ପାଖରେ ବ୍ୟାପିଗଲା । କୌଣସି ବଡ ସହରରେ ଲିଡ଼ିଆ ଜନ୍ମିଥିଲେ, ଏ ସମ୍ବାଦରେ କେହି ବିଚଳିତ ହୋଇ ନ ଥାନ୍ତେ । କିନ୍ତୁ ଲଙ୍ଗବୋର୍ଣ୍ଣ ଗ୍ରେଟ ଜାଗାଟିଏ । ତେଣୁ ଏ ବିବାହ ବିଷୟରେ ବହୁତ ଶୁଣାଗଲା । ମେରିଟନ୍‌ର ବୁଢ଼ୀମାନେ କହିବାକୁ ଲାଗିଲେ, "ଉଇକ୍‌ହାମ ଭଳି ସ୍ୱାମୀ ପାଇ ଲିଡ଼ିଆର ଜୀବନରେ କେବଳ ଦୁଃଖ ଭୋଗିବାକୁ ଅଛି ।"

ବିବାହ ଦିନ ନିକଟ ହୋଇ ଆସିଲା । ମିସେସ୍ ବେନେଟଙ୍କର ଆନନ୍ଦର ସୀମା ନାହିଁ । ଜେନ୍‌କୁ ଷୋଳ ବର୍ଷ ହେଲା ବେଳୁ ସେ ଚାହିଁଥିଲେ କିପରି ଝିଅର ବିବାହ ସୁଖ ଦେଖିବେ । ଏବେ ତାଙ୍କର ସେହି ଆଶା ଲିଡ଼ିଆଠାରେ ପୂରଣ ହେବାକୁ ଯାଉଛି । ତାଙ୍କର ଏକ ମାତ୍ର ଚିନ୍ତା ସେହି ବିବାହ, ବିବାହ ପାଇଁ ପୋଷାକ, ଗାଡ଼ି, ଚାକର ଇତ୍ୟାଦି । ସେ ଆଖ ପାଖରେ ଝିଅ ଜ୍ୱାଇଁ ରହିବା ପାଇଁ କେଉଁ ଘର ସୁବିଧା ହେବ, ତାହା ସେ ଭାବିଗଲେ । ସୁବିଧା ଜନକ ଘର ଅନେକ ତାଙ୍କ ଆଖିରେ ପଡ଼ିଲା । କିନ୍ତୁ ଜ୍ୱାଇଁଙ୍କ ଆୟ କେତେ

ଓ ସେଥିରେ ସେ ଘର ଭଡ଼ା ଦେଇପାରିବେ କି ନାହିଁ ସେ କଥା ତାଙ୍କ ଚିନ୍ତାରେ ସ୍ଥାନ ପାଇଲା ନାହିଁ ।

ଗୃହକର୍ମଚାରୀମାନଙ୍କୁ ମିସେସ୍ ବେନେଟ୍ ଏହି ଘର କଥା କହୁଥିଲେ । ସେମାନେ ଚାଲିଯିବା ପରେ ମିଃ ବେନେଟ୍ ସ୍ତ୍ରୀଙ୍କୁ କହିଲେ, "ଝିଅ ଜ୍ୱାଇଁଙ୍କ ପାଇଁ ତୁମେ ଯେ କୌଣସି ଘର ନେଇପାର, ଏପରି କି ଆଖପାଖର ସବୁ ଘର ନେଇପାର । କିନ୍ତୁ ଗୋଟିଏ କଥା ମନେରଖିଥାଅ । ମୋର ଏଇ ଘରଟିରେ ସେ ଦୁହେଁ କେବେ ସ୍ଥାନ ପାଇବେ ନାହିଁ ।"

ସ୍ୱାମୀ-ସ୍ତ୍ରୀଙ୍କ ଭିତରେ ଅନେକ ବାଦାନୁବାଦ ହେଲା । ଘର ବିଷୟରେ ଆଲୋଚନା ନ ସରୁଣୁ ମିଃ ବେନେଟ୍ କହିଲେ, "ତୁମେ ଯାହା କୁହ, ମୁଁ ବାହାଘର ପୋଷାକ ପାଇଁ କିଛୁ ଦେବି ନାହିଁ ।" ଝିଅ ପୁରୁଣା ପୋଷାକରେ ବିଭା ହେବ, ଏକଥା ମାଆ ସହି ପାରିଲେ ନାହିଁ । ବିବାହ ପୂର୍ବରୁ ଝିଅ ପନ୍ଦର ଦିନ ଉଇକହାମ୍‌ଙ୍କ ସଙ୍ଗେ ରହିବା ଲଜ୍ଜାଠାରୁ ପୁରୁଣା ପୋଷାକ ପିନ୍ଧି ବିଭାହେବା ଲଜ୍ଜା ବଳାଇ ପଡ଼ିବ ।

ଦୁଃଖର ଆତିଶଯ୍ୟ ହେତୁ ଏଲିଜାବେଥ୍ ଲିଡ଼ିଆର ପଳାୟନ ବ୍ୟାପାର ମିଃ ଡାର୍‌ସିଙ୍କ ଆଗରେ ପ୍ରକାଶ କରିଦେଇଥିବାରୁ ଏବେ ମନେ ମନେ ଦୁଃଖିତ ହେଲେ । ଅଳ୍ପ ଦିନରେ ଲିଡ଼ିଆର ବିବାହ ହୋଇଯିବ । ତେଣୁ ଯେଉଁମାନେ ଏଥିରେ ସଂପୃକ୍ତ ନୁହନ୍ତି, ସେମାନଙ୍କଠାରୁ ଘଟଣାଟା ଲୁଚାଇ ରଖିଥିଲେ ଭଲ ହୋଇଥାନ୍ତା । ଡ଼ାର୍‌ସି ଏ ଘଟଣା ଜାଣିଲେ ସୁଦ୍ଧା ପ୍ରଚାର କରିବେ ନାହିଁ ବୋଲି ଏଲିଜାବେଥଙ୍କର ବିଶ୍ୱାସ ଥିଲା । ଡାର୍‌ସିଙ୍କ ପରାମର୍ଶ ମୂଲ୍ୟବାନ୍, ଏହା ତାଙ୍କର ଧାରଣା । କିନ୍ତୁ ଏହା ପ୍ରକାଶ କରିବା ଫଳରେ ଏଲିଜାବେଥ୍ ଓ ଡ଼ାର୍‌ସିଙ୍କ ମଧ୍ୟରେ ଗୋଟାଏ ବିରାଟ ବ୍ୟବଧାନ ସୃଷ୍ଟି ହୋଇଥିଲା । ଲିଡ଼ିଆର ବିବାହ ସମାଜସମ୍ମତ ହୋଇଗଲେହେଁ ସେଇ ପରିବାର ସହିତ ଉଇକହାମ୍‌ଙ୍କର ସମ୍ପର୍କ ଯେ ପରିବାର ସଙ୍ଗେ ଡ଼ାର୍‌ସିଙ୍କର ସମ୍ବନ୍ଧ କଳ୍ପନାର ଅତୀତ ।

ଚାରି ମାସ ତଳେ ଏଲିଜାବେଥ୍ ଯେଉଁ ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଦେଇଥିଲେ, ସେହି ପ୍ରସ୍ତାବ ଏବେ ଆସିପାରିଲେ ସେ କେତେ ସୁଖୀ ନ

ହୁଅନ୍ତେ ! ତାଙ୍କର ମନେହେଲା, ଡାର୍‌ସି ହିଁ ତାଙ୍କର ଉପଯୁକ୍ତ ସ୍ୱାମୀ ହୋଇପାରନ୍ତେ । ଅବଶ୍ୟ ରୁଚି ବୃତ୍ତି ଓ ଚଳାଧାଗ୍ରରେ ଦୁହିଙ୍କ ମଧ୍ୟରେ ପାର୍ଥକ୍ୟ ଅଛି ; କିନ୍ତୁ ଡାର୍‌ସି ତାଙ୍କର ସବୁ ଅଭିଳାଷ ପୂରଣ କରିପାରନ୍ତେ । ଦୁହେଁ ପରସ୍ପର ଉପରେ ପ୍ରଭାବ ପକାଇଥିଁ ଉଭୟଙ୍କର ପରିବର୍ତ୍ତନ ଆଣି ପାରନ୍ତେ ।

ବର୍ତ୍ତମାନ ଏ ବିବାହ ଅସମ୍ଭବ । ଲିଡ଼ିଆର ବିବାହ ଏଲିଜାବେଥଙ୍କ ସହ ଡାର୍‌ସିଙ୍କ ବିବାହର ସମ୍ଭାବନାକୁ ଏକବାରେ ଲୋପ କରିଦେଲା ।

ମି· ଗାର୍ଡ଼ିନର ପୁଣି ଖଣ୍ଡିଏ ଚିଠି ପଠାଇଲେ । ଟଙ୍କା ବିଷୟରେ ଚିନ୍ତା କରିବା ଆବଶ୍ୟକ ନାହିଁ ବୋଲି ସେ ଲେଖିଥିଲେ । ସେ ସେଥିରେ ଉଲ୍ଲେଖ କରିଥିଲେ ଯେ ଉଇକ୍‌ହାମ ସୈନ୍ୟ ବିଭାଗରେ ଯୋଗ ଦେବାକୁ ସ୍ଥିର କରି ଅଛନ୍ତି । ଉତ୍ତର ଇଂଲଣ୍ଡର ଗୋଟିଏ ସେନାଦଳରେ ସେ ଅବସ୍ଥାପିତ ହେବେ । ଯେଉଁମାନଙ୍କୁ ତାଙ୍କର ଟଙ୍କା ଦେବାର କଥା ତାହା ଶୀଘ୍ର ପରିଶୋଧ କରି ଦେବାକୁ ହେବ । ତାହାହେଲେ ତାଙ୍କର ଯିବାରେ ଡେରି ହେବ ନାହିଁ । ଉଇକ୍‌ହାମ ସ୍ତ୍ରୀକୁ ନେଇ କାର୍ଯ୍ୟରେ ଯୋଗଦେବା ପୂର୍ବରୁ ଥରେ ବାପା-ମାଆ ଓ ଭଉଣୀମାନଙ୍କୁ ଦେଖି ଯିବା ଲିଡ଼ିଆର ଇଚ୍ଛା ।

ଉଇକ୍‌ହାମଙ୍କ ବିଦେଶ ଯିବା ପ୍ରସ୍ତାବ ଶୁଣି ସମସ୍ତେ ଖୁସି ହେଲେ, କେବଳ ମିସେସ୍ ବେନେଟ୍‌ଙ୍କ ମନରେ ଅଶାନ୍ତି । ତାଙ୍କର ଇଚ୍ଛା ଥିଲା, ଝିଅଜ୍ୱାଇଁ ପାଖରେ ରହିଥାନ୍ତେ ।

ମି: ବେନେଟ୍ କହିଲେ, "ଲିଡ଼ିଆ ଏଠାକୁ ଆସିବା ମୋଟେ ଦରକାର ନାହିଁ ।" କିନ୍ତୁ ଜେନ୍ ଓ ଏଲିଜାବେଥଙ୍କ ବାରମ୍ବାର ଅନୁରୋଧରେ ସେ ଝିଅ ଜ୍ୱାଇଁଙ୍କୁ ଘରକୁ ଆସିବା ପାଇଁ ଅନୁମତି ଦେବାକୁ ସ୍ୱୀକୃତ ହେଲେ । ସେହି ମର୍ମରେ ମି. ଗାର୍ଡ଼ିନରଙ୍କୁ ପତ୍ର ଲେଖାଗଲା ।

# ଝିଅ ଜ୍ୱାଇଁଙ୍କ ଅଭ୍ୟର୍ଥନା

ବିବାହ ଦିନ ଉପସ୍ଥିତ ହେଲା । ଲିଡ଼ିଆ ଓ ଉଇକହାମଙ୍କୁ ଆଣିବା ପାଇଁ ଗାଡ଼ି ପଠାଗଲା । ଜେନ୍ଙ୍କ ମନରେ ଆଶଙ୍କା ଥାଏ—ଲିଡ଼ିଆ କଅଣ ମନେକରୁଥିବ ।

ସେ ଦୁହେଁ ଆସି ପହଞ୍ଚିଗଲେ । ଖାଇବା ଘରେ ସେମାନଙ୍କ ଅଭ୍ୟର୍ଥନା କରାଗଲା । ଦୂରରୁ ଗାଡ଼ି ଆସିବାର ଦେଖି ମିସେସ୍ ବେନେଟ୍ ଆନନ୍ଦରେ ଅଧୀର ହୋଇପଡ଼ିଲେ । ମିଃ ବେନେଟ୍ଙ୍କର ମୁଖ ଗମ୍ଭୀର । ତାଙ୍କ ଝିଅମାନଙ୍କର ମନ ଭୟ ଓ ଆଶଙ୍କାରେ ପୂର୍ଣ୍ଣ ।

ଲିଡ଼ିଆ ଘରକୁ ପଶିଆସିଲାକ୍ଷଣି ମିସେସ୍ ବେନେଟ୍ ଝିଅକୁ କୁଣ୍ଢାଇ ପକାଇଲେ; ହସି ହସି ଉଇକ୍ହାମଙ୍କର କର ମର୍ଦ୍ଦନ କରି ଦୁହିଁଙ୍କୁ ଶୁଭେଚ୍ଛା ଜଣାଇଲେ ।

ଝିଅଜ୍ୱାଇଁ ମିଃ ବେନେଟ୍ଙ୍କ ପାଖକୁ ଗଲେ । କିନ୍ତୁ ତାଙ୍କର କୌଣସି ଉତ୍ସାହ ଦେଖାଗଲା ନାହିଁ, ବରଂ ବିରକ୍ତି ଦେଖାଗଲା । ଜେନ୍ ଓ ଏଲିଜାବେଥ୍ ବାପାଙ୍କ ବ୍ୟବହାରରେ ମନେ ମନେ ଦୁଃଖିତ ଓ ବିସ୍ମିତ ହେଲେ । କିନ୍ତୁ ଲିଡିଆର କିଛି ପରିବର୍ତ୍ତନ ଜଣାପଡ଼ୁ ନଥିଲା । ସେ ପୂର୍ବପରି ନିର୍ଭୀକ ଓ ପ୍ରଗଲ୍ଭ । ସେ ଭଉଣୀମାନଙ୍କର ପ୍ରଶଂସା ଓ ସାଧୁବାଦ ଆଶା କରିଥିଲା; ତାହା ନ ପାଇ ଦୁଃଖିତ ହେଲା । ଉଇକ୍ହାମ୍ ମନେ ମନେ ଦୁଃଖିତ ହେଲେ ହେଁ ବାହାରକୁ ସନ୍ତୁଷ୍ଟ ଥିଲା ପରି ଦେଖାଯାଉଥିଲେ ।

ମାଆ ଝିଅଙ୍କ ଭିତରେ ଅନେକ କଥାବାର୍ତ୍ତା ହେଲା । ଉଇକହାମ୍ ସେଠାର ବନ୍ଧୁମାନଙ୍କର ସୁଖଦୁଃଖ ବିଷୟ ପଚାରିଲେ । ଏଲିଜାବେଥ୍ ଯଥାସମ୍ଭବ ତାଙ୍କ ପ୍ରଶ୍ନର ଉତ୍ତର ଦେଲେ । ଗତ ଘଟଣା ନେଇ କାହାରି ଦୁଃଖ ଥିବାର ମନେ ହେଲା ନାହିଁ । ଲିଡିଆ ମିସେସ୍ ଫିଲିପ୍ସ, ଲେଡ଼ି ଲିଉକାସଙ୍କ ସଙ୍ଗେ ଦେଖା କରିବାର ଇଚ୍ଛା ପ୍ରକାଶ କଲା । ସେ ଭାବୁଥାଏ, ଏମାନେ ତାକୁ ମିସେସ୍ ଉଇକହାମ୍ ଡାକିଲେ କେଡେ ମଜା ହେବ !

ଭୋଜନ ଶେଷରେ ଲିଡ଼ିଆ ଚାକରମାନଙ୍କୁ ତାର ବିବାହମୁଦି ଦେଖାଇଲା । ସେ ବିବାହ କରିଛି ବୋଲି ତା ମନରେ ଗର୍ବ ।

ସମସ୍ତେ ଏକାଠି ହେବାରୁ ଲିଡ଼ିଆ ମାଆଙ୍କୁ ପଚାରିଲା, "ମାଆ, ମୋ ସ୍ୱାମୀଙ୍କ ବିଷୟରେ ତୁମର ମତ କଣ ? ସେ ଜଣେ ଅତି ସୁନ୍ଦର ଲୋକ ନୁହନ୍ତି କି ? ମୋ ଭଉଣୀମାନେ ମନେ ମନେ ମୋତେ ଈର୍ଷା କରୁଥିବେ । ଈଶ୍ୱରଙ୍କ କୃପାରୁ ସେମାନେ ମୋ ସୁଖର ଅଧେ ପାଇଲେ ମଧ୍ୟ ମୁଁ ଖୁସି ହେବି ।"

ମାଆ କହିଲେ, "ସତେ ! ତୁ ଯେ ଏତେ ଦୂରକୁ ଚାଲିଯିବୁ ତାହାହିଁ ମୋର ଦୁଃଖ । ତୁ ସେଠାକୁ ନଗଲେ ଚଳିବ ନାହିଁ ?"

ଲିଡ଼ିଆ—ନା, ମୁଁ ନିଶ୍ଚୟ ଯିବି । ସେଥିରେ କଅଣ ଅଛି ? ମୋତେ ସେଠାରେ ଭଲ ଲାଗିବ । ତୁମେ ସମସ୍ତେ ଥରେ ଯାଇ ଆମକୁ ଦେଖିଆସିବ ।

ମିସେସ୍ ବେନେଟ—ସେ ତ ମୋ ପକ୍ଷରେ ଆନନ୍ଦର କଥା ।

ଲିଡ଼ିଆ—ଦେଖିବ, ମୁଁ ସେଠାକୁ ଗଲେ ଅଳ୍ପ ଦିନ ଭିତରେ ମୋର ଗୋଟିଏ ଦୋ'ଟିଏ ଭଉଣୀଙ୍କର ବିବାହର ବ୍ୟବସ୍ଥା କରାଇଦେବି ।

ଏଲିଜାବେଥ କହିଲେ, "ଆମ ପାଇଁ ତୋର ଏତେ ଶୁଭେଚ୍ଛା ପାଇଁ ଧନ୍ୟବାଦ । କିନ୍ତୁ ତୁ ଯେଉଁ ପନ୍ଥାରେ ବିବାହ କଲୁ, ସେଇଟା ମୋତେ ଭଲ ଲାଗୁନାହିଁ ।"

ଲିଡ଼ିଆ ଓ ଉଇକହାମ ମିଃ ବେନେଟଙ୍କ ଘରେ ଦଶଦିନ ରହିଲେ । ଆଉ ଦୁଇଦିନ ପରେ ଉଇକହାମ୍ ତାଙ୍କ ସୈନ୍ୟଦଳରେ ଯୋଗ ଦେବାର କଥା । ଦୁହେଁ ଚାଲିଯିବେ ବୋଲି କେବଳ ମିସେସ୍ ବେନେଟଙ୍କ ଛଡ଼ା ଆଉ କାହାରି ମନରେ ଦୁଃଖ ନଥିଲା ।

ଲିଡ଼ିଆ ଉଇକହାମଙ୍କୁ ଯେତେ ଭଲପାଉଥିଲା, ଉଇକହାମ୍ ତାକୁ ସେତେ ଭଲ ପାଉଥିଲେ ବୋଲି ମନେ ହେଉ ନ ଥିଲା । ଲିଡ଼ିଆ କହୁଥିଲା— ମୋ ସ୍ୱାମୀଙ୍କ ପରି କେହି ହେବେ ନାହିଁ । ସବୁବେଳେ ତା ମୁହଁରେ ଉଇକହାମଙ୍କର ପ୍ରଶଂସା ।

ଘରେ ପହଞ୍ଚିବାର ଦିନେ ଦୁଇ ଦିନ ପରେ ଥରେ ଲିଡ଼ିଆ ତାର ବିବାହ ବିଷୟ ବର୍ଣ୍ଣନା କରି ଏଲିଜାବେଥଙ୍କୁ କହିଲା, "ଆମର ବିବାହ ହେଲା ସେଣ୍ଟ କ୍ଲେମେଣ୍ଟ ଗୀର୍ଜାରେ । ସମସ୍ତେ ଦିନ ଏଗାରଟା ବେଳକୁ ଗୀର୍ଜାରେ ପହଞ୍ଚିବାର କଥା ଥିଲା । ମୁଁ ମଉସା ଓ ମାଉସୀଙ୍କ ସଙ୍ଗେ ଯିବାର

ଛିର ହୋଇଥିଲା । ମୁଁ ପୋଷାକ ପିନ୍ଧିଲା ବେଳେ ମାଉସୀ ପାଖେ ପାଖେ ରହି ବଢାଇ ଦେଉଥିଲେ । ମଉସା ଓ ମାଉସୀଙ୍କ ମନ ପ୍ରସନ୍ନ ଥିଲା ପରି ଜଣାଯାଉ ନଥିଲା । ଗାଡ଼ି ପହଞ୍ଚିଲା ବେଳକୁ ମଉସା କୌଣସି କାମରେ ଚାଲିଗଲେ। ଡେରି ହେଲେ ସେ ଦିନ ବିବାହ ହୋଇ ପାରିବ ନାହିଁ ବୋଲି ମୋର ଭୟ ହେଲା । ଗିର୍ଜାକୁ ସେ ଦୁଇ ମିନିଟ୍ ପରେ ଫେରିଆସିଲେ । ପରେ ମୁଁ ଖବର ପାଇଲି ଯେ ମଉସା ଆସି ନଥିଲେ ମଧ୍ୟ ବିବାହ ହୋଇପାରିଥାନ୍ତା । ତାଙ୍କ ପରିବର୍ତ୍ତିରେ ମି. ଡାର୍‌ସି କନ୍ୟା ସମ୍ପ୍ରଦାନ କରିଥାନ୍ତେ ।"

ଶେଷ କଥାଟି ଏଲିଜାବେଥଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ସେ କହିଲେ, "କଅଣ, ମିଃ ଡ଼ାର୍‌ସି ତୋତେ ବିବାହ ଦେଇଥାନ୍ତେ ?"

"ହଁ, ସେ ୱିକହାମ୍‌ଙ୍କ ସାଥିରେ ଆସିଥିଲେ ପରା ! ଓଃ, ମୁଁ ଏକଥା କାହାରି ଆଗେ ପ୍ରକାଶ କରିବ ନାହିଁ ବୋଲି କହିଥିଲି ; ଭୁଲିଯାଇ କହି ଦେଲି ।"

ଜେନ୍—"ଏଇଟା ଗୁପ୍ତ ରଖିବାର କଥା ! ହେଉ, ଆମେ ଆଉ ସେ କଥା ପଚାରୁ ନାହୁଁ ।"

ଏଲିଜାବେଥ ଏଥିର କାରଣ ଜାଣିବାକୁ ଆଗ୍ରହୀ ଥିଲେ ହେଁ ଆଉ କିଛି ପଚାରିଲେ ନାହିଁ । ସେ ମନେ ମନେ ଏହାର କାରଣ ଖୋଜିବାକୁ ଚେଷ୍ଟା କଲେ ; କିନ୍ତୁ କିଛି ପାଇଲେ ନାହିଁ । ସେ ଅଧିକ ଧରି ନ ପାରି ସଙ୍ଗେ ସଙ୍ଗେ ମାଉସୀଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଲେ ।

## ବିବାହର ଭିତିରି କଥା

ମାଉସୀଙ୍କ ପାଖରୁ ଶୀଘ୍ର ଉତ୍ତର ଅସିଗଲା । ଏଲିଜାବେଥ ଚିଠି ଖଣ୍ଡିକ ଏକୁଟିଆ ବସି ପଢ଼ିବାକୁ ଲାଗିଲେ ।

"ସ୍ନେହର ଏଲିଜାବେଥ,

ତୋର ଚିଠି ପାଇ ବିସ୍ମିତ ହେଲି । ତୋଠାରୁ ଏପରି ଚିଠି ପାଇବି ବୋଲି ଆଶା କରି ନ ଥିଲି । ତୋର ମଉସା ମଧ୍ୟ ମୋଭଳି ବିସ୍ମିତ ହେଲେ । ତୁମେ କାଳେ ପ୍ରକୃତ ଘଟଣା ଜାଣି ନ ଥିବ, ସେଥିପାଇଁ ସବୁ କଥା ବୁଝାଇ ଲେଖୁଛି ।

ଆମେ ଲଙ୍ଗବୋର୍ଣ୍ଣରୁ ଏଠାକୁ ଆସିବା ଦିନ ମି. ଡାର୍‌ସି ହଠାତ୍ ଆସି ପହଞ୍ଚିଗଲେ । ଅମେ ତାଙ୍କୁ ଆଦୌ ଆଶା କରି ନ ଥିଲୁ । ସେ ଅସି

ତୁମ ଭଉଣୀ ଲିଡ଼ିଆ ଓ ମିଃ ଉଇକହାମକୁ ଦେଖିଥିବା କହିଲେ । ଦୁହିଁଙ୍କ ସାଥିରେ ତାଙ୍କର କଥାବାର୍ତ୍ତା ମଧ୍ୟ ହୋଇଥିଲା ବୋଲି ପ୍ରକାଶ କଲେ । ସେ ସେ ସେମାନଙ୍କୁ ଖୋଜିବା ପାଇଁ ଆମ ଆସିବାର ପରଦିନ ଲଣ୍ଡନକୁ ଆସିଥିଲେ । ଉଇକହାମଙ୍କର ଦୁର୍ଗୁଣ ପଦାରେ ନ ପକାଇ ସେ ଭୁଲ କରିଛନ୍ତି । ତାହା ହୋଇଥିଲେ କୌଣସି ଯୁବତୀ ତାଙ୍କ ପାଲରେ ପଡ଼ି ନ ଥାନ୍ତେ । କିନ୍ତୁ ବ୍ୟକ୍ତିଗତ ଦୋଷଗୁଣ ବାହାରେ ପ୍ରକାଶ କରିବାକୁ ତାଙ୍କର ଇଚ୍ଛା ନ ଥିଲା । ତାଙ୍କରି ଦୋଷରୁ ଲିଡ଼ିଆର ଏପରି ଦୁର୍ଦ୍ଦଶା ଘଟିଲା ବୋଲି ମନେକରି ସେ ପ୍ରତିକାର କରିବାକୁ ଲାଗିଲେ । ଯଦି ଏହା ଛଡ଼ା ତାଙ୍କର ଅନ୍ୟ କୌଣସି ଅଭିପ୍ରାୟ ଥାଏ, ତଥାପି ତାଙ୍କୁ ଦୋଷ ଦେବାର କାରଣ ନାହିଁ । ମିସେସ୍ ୟଙ୍ଗ୍ ବୋଲି ଜଣେ ମହିଳା ମିସ୍ ଡାର୍ସିଙ୍କର ଶିକ୍ଷୟିତ୍ରୀ ଥିଲେ; କିନ୍ତୁ କେତେକ କାରଣରୁ ତାଙ୍କୁ ବାହାର କରି ଦିଆଯାଇଥିଲା । ଡାର୍ସିଙ୍କ ଘରୁ ଯିବା ପରେ ସେ ଏଡ଼ୱାର୍ଡ ଷ୍ଟ୍ରୀଟରେ ରହି ଘର ଭଡ଼ା ଲଗାଇ ଚଳୁଥିଲେ । ଏହି ମିସେସ୍ ୟଙ୍ଗ୍ ଉଇକହାମ୍‌ଙ୍କର ଜଣେ ବନ୍ଧୁ । ତେଣୁ ମିଃ ଡାର୍ସି ମିସେସ୍ ୟଙ୍ଗ୍‌ଙ୍କ ଘରକୁ ଗଲେ । ତିନି ଚାରି ଦିନ ପରେ ତାଙ୍କଠାରୁ ସେ ଉଇକହାମ ଓ ଲିଡ଼ିଆଙ୍କର ଖବର ପାଇଲେ । ବୋଧହୁଏ ଏଥିପାଇଁ ମିଃ ଡାର୍ସି କିଛି ଲାଞ୍ଚ ଦେଇଥିବେ । ଶେଷରେ ମିଃ ଡାର୍ସି ମିସେସ୍ ୟଙ୍ଗ୍‌ଙ୍କଠାରୁ ଠିକଣା ନେଇ ଉଇକହାମ୍ ଓ ଲିଡ଼ିଆଙ୍କ ସଙ୍ଗେ ଦେଖାକଲେ । ପ୍ରଥମେ ଘରକୁ ଫେରି ଯାଇ ଗୋଟାଏ ଲଜ୍ଜାଜନକ ପରିସ୍ଥିତିରୁ ରକ୍ଷାପାଇବା ପାଇଁ ସେ ଲିଡ଼ିଆକୁ ପ୍ରବର୍ତ୍ତାଇଲେ । କିନ୍ତୁ ଲିଡ଼ିଆ କୌଣସି ମତେ ଯିବାକୁ ରାଜି ହେଲା ନାହିଁ । ତାର ଦୃଢ଼ ବିଶ୍ୱାସ ଥିଲା, ଦିନେ ନା ଦିନେ ସେ ଦୁହିଁଙ୍କର ବିବାହ ହେବ । ଅଗତ୍ୟା ଡାର୍ସି ଶୀଘ୍ର ବିବାହ ହେବାର ଚେଷ୍ଟା କଲେ । ସେ ଜାଣିପାରିଲେ ଯେ ଲିଡ଼ିଆକୁ ବିବାହ କରିବା ଉଇକହାମ୍‌ଙ୍କର ପ୍ରକୃତ ଇଚ୍ଛା ନୁହେଁ । ନଗଦ କିଛି ସାହାଯ୍ୟ ମିଳିବାର ଆଶା ଦେଖାଇ ଉଇକହାମ୍‌ଙ୍କୁ ବିବାହ ପାଇଁ ରାଜି କରାଇବାକୁ ହେଲା ।

ଏହା ପରେ ମଉସାଙ୍କୁ ସେ ଏହା କହିଲେ । ମିଃ ଡାର୍ସି ଜିଦ୍‌ଖୋର୍ । ତାଙ୍କର ଅନେକ ଦୋଷ ଅଛି ବୋଲି ଶୁଣାଯାଏ । କିନ୍ତୁ ସେ ଯେ

ଜାଲ୍‌ଖୋର ଏଥିରେ ଆଦୌ ସନ୍ଦେହ ନାହିଁ । ତୁମ ମଉସା ଓ ଡାର୍‌ସିଙ୍କ ଭିତରେ କଥା ସ୍ଥିର ହୋଇଗଲା । ପ୍ରକୃତରେ ସେ ଟଙ୍କା ଡାର୍‌ସି ଦେଇଛନ୍ତି; ମଉସା ଦେଇନାହାନ୍ତି । ସେ ଦେଇଛନ୍ତି ବୋଲି ପ୍ରକାଶ ପାଇବା ତାଙ୍କର ଇଚ୍ଛା ନୁହେଁ । ଉଇକହାମ୍‌ଙ୍କର ପ୍ରାୟ ଏକ ହଜାର ପାଉଣ୍ଡ କରଜ ସୁଝାଯିବ; ଲିଡ଼ିଆର ଚଳିବା ପାଇଁ ପ୍ରାୟ ହଜାରେ ପାଉଣ୍ଡ ଦରକାର । ଯୁଦ୍ଧ ବିଭାଗରେ ଉଇକହାମ୍‌ କମିଶନ ପାଇବା ପାଇଁ ସହଜେ ଟଙ୍କା ଦରକାର ।

ଏ ସବୁର ବ୍ୟବସ୍ଥା କରି ମି. ଡାର୍‌ସି ପେମ୍ବର୍ଲି ଗଲେ । କିନ୍ତୁ କଥା ହେଲା ଯେ ସେ ପୁଣି ଲଣ୍ଡନ ଆସି ବିବାହରେ ଯୋଗ ଦେବେ ଓ ଟଙ୍କା ପଇସା ଅଡ଼ୁଆ ତୁଟାଇବେ । ଲିଡ଼ିଆ ଓ ଉଇକ୍‌ହାମ ଅନେକ ସମୟରେ ଆମ ଘରକୁ ଆସୁଥିଲେ । ମୁଁ ଲିଡିଆ ଉପରେ ଖୁବ୍‌ ଅସନ୍ତୁଷ୍ଟ । ମୁଁ ତାକୁ ଯେତେ ବୁଝାଇଲେ ସୁଦ୍ଧା ସେ ବୁଝିଲା ନାହିଁ । ମୁଁ ବିରକ୍ତ ହେଲି ସିନା, କିନ୍ତୁ ତୁମ କୁହିଁଙ୍କ କଥା ମନେପକାଇ ଧୈର୍ଯ୍ୟ ଧରି ରହିଲି ।

ଯାହାହେଉ, ମିଃ ଡାର୍‌ସି ବିବାହରେ ଯୋଗ ଦେଇଥିଲେ । ମିଃ ଡାରସି ନଥିଲେ ଏ କାର୍ଯ୍ୟ ହୋଇପାରି ନଥାନ୍ତା । ତାଙ୍କର ମୋ ପ୍ରତି ବ୍ୟବହାର ଅତି ମଧୁର । ତାଙ୍କର ବୁଦ୍ଧି ଓ ତାଙ୍କର ପରାମର୍ଶ ଆମକୁ ଖୁବ୍‌ ସାହାଯ୍ୟ କରିଛି । ଆଉ ଅଧିକ କଅଣ ଲେଖିବ ?”

ଚିଠିଟି ପଢ଼ି ଏଲିଜାବେଥଙ୍କର ଯେତିକି ଆନନ୍ଦ ହେଲା, ସେତିକି ଦୁଃଖ ହେଲା । ଡାର୍‌ସିଙ୍କ ଭଲ ଗୁଣଗୁଡ଼ିକ ବାରମ୍ବାର ତାଙ୍କର ମନେପଡ଼ିଲା । ଲିଡ଼ିଆକୁ ଖୋଜିବା ପାଇଁ ସେ କେତେ ଯତ୍ନ କରିନାହାନ୍ତି ? ଏପରି କି ଯେଉଁ ମିସେସ୍‌ ୟଙ୍ଗ୍‌ଙ୍କୁ ସେ ଘୃଣା କରନ୍ତି ତାଙ୍କର ସାହାଯ୍ୟ ନେଇଛନ୍ତି । ଲିଡ଼ିଆ ପାଇଁ ଏତେ କାମ କରିଥିବା ତାଙ୍କ ପକ୍ଷରେ ଅସମ୍ଭବ । ଯିଏ ତାଙ୍କୁ ପ୍ରତ୍ୟାଖ୍ୟାନ କରିଛି, ତା ପାଇଁ ସେ କାହିଁକି ଏତେ କଥା କରନ୍ତେ ? ତାଙ୍କଭଳି ଗର୍ବୀଲୋକ ନିଜର ଶତ୍ରୁ ଉଇକ୍‌ହାମ ପାଇଁ କଣ ଏ ସବୁ କଲେ ? ଏଲିଜାବେଥ ଚିଠିଟି ଯେତେ ଥର ପଢ଼ିଲେ ସେତିକି ବେଶି ଡାର୍‌ସିଙ୍କୁ ପ୍ରଶଂସା କଲେ । ତାଙ୍କର ଧାରଣା ହେଲା, ଏବେ ମଧ୍ୟ ଡାର୍‌ସି ତାଙ୍କୁ ଭଲପାଆନ୍ତି ।

# ମି: ବିଙ୍ଗ୍‌ଲେ ଓ ମି: ଡାର୍‌ସିଙ୍କ ଶୁଭାଗମନ

ଲିଡ଼ିଆ ଓ ଉଇକ୍‌ହାମ ବିଦାୟ ନେଇ ଯିବାର ଦିନ ଉପସ୍ଥିତ ହେଲା । ଦୁଇ ତିନ ବର୍ଷ ପର୍ଯ୍ୟନ୍ତ ଲିଡ଼ିଆ ସଙ୍ଗେ ଦେଖା ହେବାର ସମ୍ଭାବନା ନଥିବାରୁ ମିସେସ୍ ବେନେଟ୍ ନିତାନ୍ତ ଦୁଃଖିତ ହେଲେ ଓ ବାରମ୍ବାର ଚିଠି ଦେବାକୁ କହିଲେ । ଉଇକହାମ୍ ହସି ହସି ଶାଶୁଶ୍ୱଶୁରଙ୍କଠାରୁ ବିଦାୟ ନେଲେ ।

ଝିଅଜ୍ୱାଇଁ ଯିବା ପରେ ମି. ବେନେଟ ଉଇକ୍‌ହାମଙ୍କର ପ୍ରଶଂସା କଲେ । ତାଙ୍କର ମନେହେଲା ଯେ ଜଣେ ଖୁବ୍ ଉପଯୁକ୍ତ ଜ୍ୱାଇଁ ପାଇଛନ୍ତି ।

ଏଥିମଧ୍ୟରେ ଖବର ମିଳିଲା ଯେ ମି. ବିଙ୍ଗ୍‌ଲେ ନେଦରଫିଲ୍‌ଡ଼କୁ ଆସି କିଛିଦିନ ରହିବେ । ମିସେସ୍ ବେନେଟ୍ ହସି ହସି ଜେନଙ୍କୁ ଏହି ଖବର ଶୁଣାଇଦେଲେ ।

ମିସେସ୍ ବେନେଟ୍ ମିସେସ୍ ଫିଲିପ୍‌ସଙ୍କୁ କହିଲେ, "ମି: ବିଙ୍ଗ୍‌ଲେ ଶୀଘ୍ର ଆସୁଛନ୍ତି । ତାଙ୍କ ଘର, ଯେତେବେଳେ ଇଚ୍ଛା ଆସିବେ । ମୁଁ ତାଙ୍କୁ ଦେଖିବାକୁ ଇଚ୍ଛା କରେ ନାହିଁ ସତ, କିନ୍ତୁ ସେ ଆସିଲେ କଅଣ ହେବ କିଏ କହିପାରେ ?"

ଜେନ୍ ଏ ସମ୍ବାଦରେ ଟିକିଏ ଲଜ୍ଜା ଅନୁଭବ କଲେ ଓ ଏଲିଜାବେଥଙ୍କୁ କହିଲେ, "ବିଙ୍ଗ୍‌ଲେ ଆସୁଛନ୍ତି । ସେଥିରେ ମୋର ଦୁଃଖ ନାହିଁ ।" ବିଙ୍ଗ୍‌ଲେଙ୍କ ଆସିବାର ଦିନେ ଦୁଇ ଦିନ ପୂର୍ବରୁ ସେ ପୁଣି ଏଲିଜାବେଥଙ୍କୁ କହିଲେ, "ସେ ଆସିବା ଅର୍ଥ ମୋର ଦୁଃଖ । ମାଆ ଯାହା କହିବୁଲୁଛନ୍ତି, ସେଥିରେ ମୋର ଦୁଃଖ ବଢ଼ା ଆଉ କିଛି ଲାଭ ନାହିଁ । ମି. ବିଙ୍ଗ୍‌ଲେ ନେଦରଫିଲ୍‌ଡ଼ରୁ ଗଲେ ଯାଇ ମୁଁ ରକ୍ଷାପାଇବି ।"

ବର୍ଷକ ତଳେ ମିସେସ୍ ବେନେଟ ସ୍ୱାମୀଙ୍କୁ ଯାହା କହିଥିଲେ ପୁଣି ଠିକ୍ ସେଇଆ କହିଲେ । ସେ କହିଲେ, "ମି: ବିଙ୍ଗ୍‌ଲେ ଆସୁଛନ୍ତି । ତୁମେ ଯାଇ ତାଙ୍କୁ ଦେଖାକରିବ ।"

ମି. ବେନେଟ୍ ଉତ୍ତର କଲେ, "ନା, ମୁଁ ତା କରିନପାରେ । ଗଲାବର୍ଷ ତୁମେ ମୋତେ ବାଧ୍ୟକରି ପଠାଇଥିଲ । କିନ୍ତୁ କଅଣ ହେଲା ? ସେ କଅଣ

ଆମର କୌଣସି ଝିଅକୁ ବିବାହ କଲେ ? ମୁଁ ଏଡ଼େ ବୋକା ନୁହେଁ ଯେ ପୁଣି ଯିବି । ଆମ ଘର କେଉଁଠି ତାଙ୍କୁ ଅଜଣା ନାହିଁ । ତାଙ୍କର ଇଚ୍ଛା ଥିଲେ ସେ ଆମକୁ ଡକାଇବେ ବା ନିଜେ ଆସିବେ ।"

ମି: ବିଙ୍ଗ୍‌ଲେ 'ନେଦାରଫିଲ୍ଡ଼'କୁ ଆସିବାର ଦୁଇଦିନ ପରେ ତାଙ୍କ ଗାଡ଼ି ମି: ବେନେଟ୍‌ଙ୍କ ଘର ଆଗରେ ଦେଖାଗଲା । ତାଙ୍କ ଗାଡ଼ିକୁ ଦେଖିଲାକ୍ଷଣି ମିସେସ୍ ବେନେଟ୍ ଆନନ୍ଦରେ ଅଧୀର ହୋଇପଡ଼ିଲେ । ଝିଅମାନଙ୍କୁ ଦେଖାଇବା ପାଇଁ ଡାକିଲେ । କିନ୍ତୁ ଜେନ୍ ଆଦୌ ଉଠିଲେ ନାହିଁ । ଏଲିଜାବେଥ ମାଆଙ୍କ କଥା ରକ୍ଷା କରି ଝରକା ପାଖକୁ ଯାଇ ଗୁହିଁଲେ । କିନ୍ତୁ ବିଙ୍ଗ୍‌ଲେଙ୍କ ସହିତ ଡାର୍‌ସିଙ୍କୁ ଦେଖି ଫେରିଆସି ଜେନ୍‌ଙ୍କ ପାଖରେ ବସିଲେ ।

ମିସେସ୍ ବେନେଟ୍ ଡାର୍‌ସିଙ୍କୁ ଘୃଣା କରୁଥିଲେ ମଧ୍ୟ ବିଙ୍ଗ୍‌ଲେଙ୍କର ବନ୍ଧୁଭାବରେ ଆସିଥିବାରୁ ତାଙ୍କୁ ମଧ୍ୟ ସମ୍ବର୍ଦ୍ଧନା ଜଣାଇବାକୁ ବାଧ୍ୟ ହେଲେ ।

ଜେନ୍ ଓ ଏଲିଜାବେଥ ଅସ୍ୱସ୍ତି ଅନୁଭବ କରୁଥିଲେ ସତ, କିନ୍ତୁ ଏଲିଜାବେଥ ମନେ ମନେ ଭାବୁଥିଲେ, "ଡାର୍‌ସିଙ୍କର ମୋପ୍ରତି ଅନୁରକ୍ତି ଏବେ ମଧ୍ୟ ରହିଛି । ତଥାପି ତାଙ୍କର ଢଙ୍ଗଢାଙ୍ଗ ଦେଖିବା ଦରକାର ।"

ସେ ତ ପ୍ରକୃତି ବସି ଗୋଟାଏ କିଛି ସିଲେଇ କରିବାକୁ ଲାଗିଲେ । କିନ୍ତୁ ତାଙ୍କର ଦୃଷ୍ଟି ଥାଏ ଡ଼ାର୍‌ସିଙ୍କ ଉପରେ । ଦୁଇ ଭଉଣୀ ଅତିଥିଦ୍ୱୟଙ୍କୁ ଅଭିବାଦନ ଜଣାଇଲେ ଓ କୌଣସି ଆଗ୍ରହ ପ୍ରକାଶ ନକରି ବସିରହିଲେ ।

ମି. ବିଙ୍ଗ୍‌ଲେ ଆନନ୍ଦ ପ୍ରକାଶ କଲେହିଁ ବିଚଳିତ ହେଲା ପରି ଜଣାପଡ଼ୁଥିଲେ । ମିସେସ୍ ବେନେଟ୍ ତାଙ୍କୁ ବିଶେଷ ସମ୍ମାନ ଦେଖାଇ ଅଭ୍ୟର୍ଥନା କଲେ । ତାହା ଦେଖି ଭଉଣୀ ଦୁହିଁଙ୍କୁ ଲଜ୍ଜା ବୋଧ ହେଲା । ବିଶେଷତଃ ଡ଼ାର୍‌ସିଙ୍କ ପ୍ରତି ମାଆଙ୍କର ଉଦାସୀନଭାବ ଏଲିଜାବେଥଙ୍କୁ ଭଲ ଲାଗିଲା ନାହିଁ । ଲିଡ଼ିଆ ପାଇଁ ସିଏ ଏତେ କଷ୍ଟ ସ୍ୱୀକାର କରିଥିଲେ, ତାଙ୍କ ପ୍ରତି ମାଆଙ୍କର ଅବହେଳା ଏଲିଜାବେଥଙ୍କୁ ଖରାପ ଲାଗିଲା ।

ଡ଼ାର୍ସି ମିଷ୍ଟର ଓ ମିସେସ୍ ଗାର୍ଡ଼ିନରଙ୍କ ଖବର ପଚ୍ଚରି ଚୁପ୍ ରହିଲେ ।

ମିସେସ୍ ବେନେଟ୍ ପଚ୍ଚରିଲେ, "ମିः ବିଙ୍ଗ୍‌ଲେ, ତୁମେ ଅନେକ ଦିନ ବାହାରେ ଯାଇଥିଲ । ଏଥିମଧ୍ୟରେ ଆଖପାଖରେ ବହୁତ ପରିବର୍ତ୍ତନ ଘଟିଯାଇଛି । ମିସ୍ ଲଉକାସଙ୍କର ବିବାହ ହୋଇଗଲାଣି । ମୋର ଗୋଟିଏ ଝିଅର ମଧ୍ୟ ବିବାହ ହୋଇଯାଇଛି । ସେ କଥା ଶୁଣିଥିବ; ଖବର କାଗଜରେ ଦେଖିଥିବ ।"

ବିଙ୍ଗ୍‌ଲେ କହିଲେ, "ମୁଁ ସେ ସମ୍ବାଦ ଜାଣେ ; ତୁମ ଝିଅର ବିବାହ ହୋଇଥିବାରୁ ସେଥିପାଇଁ ଆନନ୍ଦିତ ।" ସେତେବେଳେ ମି. ଡାର୍ସି କପରି ଦେଖାଯାଉଥିଲେ, ତାହା ଏଲିଜାବେଥ ଲକ୍ଷ୍ୟ କରି ପାରିଲେ ନାହିଁ ।

ମିସେସ୍ ବେନେଟ୍ କହିଲେ "ଭଲ ଜାଗାରେ ଝିଅର ବିଭା ହୋଇଗଲା, ଆନନ୍ଦର କଥା । କିନ୍ତୁ ସେ ତା ସ୍ୱାମୀ ସାଥିରେ ନିଉକାଷ୍ଟଲକୁ ଚାଲିଗଲା । ସେଥିପାଇଁ ମୋର ଘୋର ଦୁଃଖ । କେତେ ଦିନ ଯାଏ ସେ ଦୁହେଁ ସେଠାରେ ରହିବେ ଜାଣେନାହିଁ । ତୁମେ ଶୁଣିଥିବ ଯେ ମୋ ଜ୍ୱାଇଁ ଯୁଦ୍ଧ ବିଭାଗରେ ଯୋଗ ଦେଇ ଅଛନ୍ତି । ଭାଗ୍ୟର କଥା, ତାଙ୍କୁ ସାହାଯ୍ୟ କରିବାକୁ କେତେଜଣ ବନ୍ଧୁ ଅଛନ୍ତି । ଅବଶ୍ୟ ଯେତିକି ବନ୍ଧୁ ତାଙ୍କର ହେବାର କଥା ସେତେ ନାହାନ୍ତି ।"

ଏଲିଜାବେଥ ବୁଝି ପାରିଲେ ଯେ ତାଙ୍କ ମାଆ ଡ଼ାର୍ସିଙ୍କୁ ଲକ୍ଷ୍ୟ କରି ଶେଷ କଥାଟି କହିଲେ । ତାଙ୍କ ମନ ଖରାପ ହୋଇଗଲା ।

ଅତିଥି ଦୁହେଁ ବିଦାୟ ନେଇ ଯିବାବେଳକୁ ମିସେସ୍ ବେନେଟ୍ ସେମାନଙ୍କୁ ଅନ୍ୟ ଦିନକୁ ନିମନ୍ତ୍ରଣ ଜଣାଇଲେ । ସେମାନେ ଚାଲିଯିବାରୁ ଏଲିଜାବେଥ କିଛି ସମୟ ଚାଲବୁଲି କରି ନିଜକୁ ପ୍ରକୃତିସ୍ଥ କଲେ । ଡ଼ାର୍ସିଙ୍କ ବ୍ୟବହାର ବିଷୟ ଚିନ୍ତାକରି ସେ ଭାବିଲେ, "ଚୁପ୍ କରି ରହିବା ପାଇଁ କଅଣ ଡାର୍ସି ଆସିଥିଲେ ? ସେ ଏଡ଼େ ଉଦାସୀନ କାହିଁକି ? ମଉସା ଓ ମାଉସୀଙ୍କ ପ୍ରତି ତାଙ୍କର ଏପରି ଭଲ ବ୍ୟବହାର କପରି ହୋଇପାରେ ?"

କିନ୍ତୁ ମିସେସ୍ ବେନେଟ୍‌ଙ୍କର ଚିନ୍ତା ଭିନ୍ନ ପ୍ରକାର । ସେ ଜେନ୍ ପ୍ରତି ମିଃ ବିଙ୍ଗ୍‌ଲେଙ୍କ ବ୍ୟବହାର ଦେଖି ସ୍ଥିର କରିନେଲେ ଯେ ଦିନେ ଜେନ୍ ନିଶ୍ଚୟ ତାଙ୍କୁ ସ୍ୱାମୀରୂପେ ପାଇବ ।

ଜେନ୍ ଆନନ୍ଦ ପ୍ରକାଶ କରି ଏଲିଜାବେଥଙ୍କୁ କହିଲେ, "ଆଜିର ମିଳନଟା ଖୁବ ଭଲ ହେଲା । ଏଣିକି ଅନେକ ଥର ଏହିଭଳି ମିଳନର ସୁଯୋଗ ଘଟିବ ।"

ଏଲିଜାବେଥ କୌଣସି ମତ ପ୍ରକାଶ ନ କରି ଟିକିଏ ହସିଦେଲେ ମାତ୍ର ।

ଜେନ୍ ପୁଣି କହିଲେ, "ଲିଜି, ତୋର ହସ ମୋତେ ଖରାପ ଲାଗୁଛି । ମୁଁ ତାଙ୍କ କଥାବାର୍ତ୍ତାରୁ ଏବେ ଖୁବ୍ ଆନନ୍ଦ ପାଇଲି । ତାଙ୍କର କିଛି ସ୍ୱାର୍ଥ ନାହିଁ । ସେ ମୋର ମନ ନେବାକୁ ଆଦୌ ଚେଷ୍ଟିତ ନୁହନ୍ତି । ପ୍ରକୃତରେ ତାଙ୍କର ବ୍ୟବହାର ଅତି ମଧୁର ।"

ଏଲିଜାବେଥ କହିଲେ, "ଅପା, ମୋତେ କଅଣ ଟିକିଏ ସୁଦ୍ଧା ହସିବାକୁ ଦେବ ନାହିଁ ? ମୋ ପ୍ରତି ଏତେ ନିର୍ଦ୍ଦୟ ହେବାର କାରଣ ବୁଝି ପାରୁନାହିଁ ।"

"କେତେ ଘଟଣାରେ ଅନ୍ୟର ବିଶ୍ୱାସ ଜନ୍ମାଇବା ଅତି କଠିନ ।"

"ଆଉ କେତେକ ଘଟଣାରେ ଅନ୍ୟର ବିଶ୍ୱାସ ଜନ୍ମାଇବା ଏକବାରେ ଅସମ୍ଭବ ।"

## ପ୍ରେମ ପଥେ ଜେନ୍ ଓ ମିଃ ବିଙ୍ଗ୍‌ଲେ

ମି. ଡାର୍‌ସି ଦଶଦିନ ପାଇଁ ଲଣ୍ଡନ ଚାଲିଗଲେ । ଏଥି ମଧ୍ୟରେ ମିସେସ୍ ବେନେଟ୍ ମି. ବିଙ୍ଗଲେଙ୍କୁ ନିମନ୍ତ୍ରଣ କରି ଆଣିଲେ ।

ଖିଆପିଆ ପରେ ମି. ବେନେଟ୍ ତାଙ୍କ ଲାଇବ୍ରେରୀକୁ ପଢିବାପାଇଁ ଗଲେ । ମେରି ମଧ୍ୟ ତାଙ୍କ ପଛେ ପଛେ ଉପର ମହଲାକୁ ପଢ଼ିବାକୁ ଗଲା । ମିସେସ୍ ବେନେଟ୍‌ଙ୍କର ଇଚ୍ଛା ଜେନ୍ ଓ ବିଙ୍ଗ୍‌ଲେ ଏକାଠି ରହନ୍ତୁ; ଅନ୍ୟମାନେ

ସୁନ୍ଦରଯାଆନ୍ତୁ । ତେଣୁ ସେ କିଟିକୁ କିଛି କହିବା ବାହାନାରେ ବାହାରକୁ ଡାକନେଲେ । କିଛି ସମୟ ପରେ ସେ ପୁଣି ଆସି ଏଲିଜାବେଥଙ୍କୁ ଡାକି କହିଲେ, "ଲିଜି, ତୋତେ କିଛି କହିବାକୁ ଅଛି, ଆ ।"

ଏଲିଜାବେଥ ବାଧ୍ୟହୋଇ ବାହାରିଗଲେ । ମିସେସ୍ ବେନେଟ୍ କିଟିକୁ ନେଇ ଉପର ମହଲକୁ ଯିବାବେଳେ କହିଲେ, "ସେ ଦୁହେଁ ଏକୁଟିଆ କଥାବାର୍ତ୍ତା ହେଉଥାନ୍ତୁ ।"

ମାଆ ଉପରକୁ ଯିବା ପରେ ଏଲିଜାବେଥ ପୁଣି ବୈଠକଖାନାକୁ ଆସିଲେ । ଫଳରେ ମିସେସ୍ ବେନେଟ୍‌ଙ୍କର ପରିକଳ୍ପନା ବୃଥା ହୋଇଗଲା । ମି. ବିଙ୍ଗଲେଙ୍କ କଥାବାର୍ତ୍ତା ଓ ବ୍ୟବହାରରେ ଜେନ୍ ଓ ଏଲିଜାବେଥ ମୁଗ୍ଧ ହୋଇଗଲେ; କିନ୍ତୁ ସ୍ପଷ୍ଟ ଭାବରେ ତାହା ପ୍ରତି ପ୍ରେମର ସଙ୍କେତ ମିଳିଲା ନାହିଁ । ମିସେସ୍ ବେନେଟ୍‌ଙ୍କର ନିର୍ବୋଧ କଥାବାର୍ତ୍ତାକୁ ସେ ଧୈର୍ଯ୍ୟ ସହକାରେ ଶୁଣୁଥିଲେ; କିଛି ପ୍ରତିବାଦ କରୁ ନଥିଲେ ।

ଜେନ୍ ବିଙ୍ଗଲେଙ୍କ ଉଦାସୀନଭାବ ବିଷୟରେ କିଛି କହି ନଥିଲେ । ଏଲିଜାବେଥଙ୍କର ଧାରଣା ହେଲା, ମି. ଡାର୍ସିଙ୍କ ସ୍ୱୀକୃତିରେ ଶେଷ ସିଦ୍ଧାନ୍ତ ନିଆଯିବ ।

ଏହି ଘଟଣାର ପରଦିନ ମି. ବିଙ୍ଗଲେ ଓ ମି. ବେନେଟ୍ ଏକତ୍ର ଶିକାରକୁ ଗଲେ । ଦୁହେଁ ଏକତ୍ର ଭୋଜନ କଲେ । ସନ୍ଧ୍ୟାବେଳକୁ ମିସେସ୍ ବେନେଟ୍ ପୁଣି ଚେଷ୍ଟା କଲେ କିପରି ଜେନ୍ ଓ ବିଙ୍ଗ୍‌ଲେଙ୍କର ଏକୁଟିଆ ମିଳନ ହେବ । ଏଲିଜାବେଥ କୋଠରୀରେ ବସି ଲେଖୁଥିଲା । ସେ ବୈଠକଖାନାକୁ ଆସି ଦେଖିଲା ମି. ବିଙ୍ଗଲେ ଓ ଜେନ୍ ଛିଡ଼ା ହୋଇ ଗପ କରୁଛନ୍ତି । ସେ ଦୁହିଁଙ୍କୁ ଦେଖି ଏଲିଜାବେଥ ବାହାରିଯାଉଥିଲେ; କିନ୍ତୁ ମି. ବିଙ୍ଗଲେ ଜେନ୍‌ଙ୍କୁ କିଅଣ ପଦେ କହିଦେଇ ଘରୁ ବାହାରି ଆସିଲେ । ଏଲିଜାବେଥ ଓ ଜେନ୍‌ଙ୍କ ଭିତରେ ପ୍ରଗାଢ଼ ସ୍ନେହ । ଜେନ୍ କହିଲେ, "ମୋ ଭଳି ଭାଗ୍ୟବତୀ କିଏ ଥିବେ । ମୁଁ ଏତେ ଦୂର ଆଶା କରିନଥିଲି । ମୋର ଆନନ୍ଦ ପ୍ରକାଶ କରିବାକୁ ଭାଷା ପାଉନାହିଁ ।" ଭଉଣୀର ସୌଭାଗ୍ୟରେ ଏଲିଜାବେଥ ଆନନ୍ଦ ପ୍ରକାଶ କଲେ ।

ଏଥି ମଧ୍ୟରେ ବିଙ୍ଗଲେ ମି. ବେନେଟ୍‌ଙ୍କ ପାଖକୁ ଯାଇଥିଲେ । ଜେନ୍ ଯାଇ ମାଆଙ୍କୁ ଶୁଭ ଖବର ଜଣାଇଦେଲେ । ଏପରି ଆନନ୍ଦମୟ ସନ୍ଧ୍ୟା କେବେ ମି. ବେନେଟ୍‌ଙ୍କ ଘରେ ଘଟି ନଥିଲା । କିଟି ଏ ସମ୍ବାଦରେ ହସି ହସି ଗାଇଲା, "ମୋ ପାଳି ଆସୁଛି ।" ମିସେସ୍ ବେନେଟ୍ ଆନନ୍ଦରେ ଅଧୀର ହୋଇ ମି. ବିଙ୍ଗଲେଙ୍କୁ ଯେ କଅଣ କହୁଥିଲେ, ସେ ନିଜେ ଜାଣିପାରୁ ନ ଥିଲେ । ମି. ବେନେଟ୍ ସେମାନଙ୍କ ସଙ୍ଗେ ଯୋଗ ଦେଲେ । ସେ ମଧ୍ୟ ଖୁବ୍ ଆନନ୍ଦିତ ।

ମି. ବିଙ୍ଗ୍‌ଲେ ଯିବା ପରେ ମି. ବେନେଟ୍ ଝିଅକୁ କହିଲେ, "ଜେନ୍, ତୋର ଜୀବନ ସୁଖମୟ ହେବ । ତୋ ସୁଖରେ ମୁଁ ଆନନ୍ଦିତ ।" ଜେନ୍ ବାପାଙ୍କୁ ଚୁମ୍ବନ ସହ ଧନ୍ୟବାଦ ଦେଲେ । ମି: ବେନେଟ କହିଲେ, "ତୁମର ପାରିବାରିକ ଜୀବନ ସୁଖରେ କଟିବ । କାରଣ ତୁମେ ଦୁହେଁ ଏକାପରି । ତୁମର ପ୍ରକୃତି ଏପରି ଯେ ତୁମେ ଦୁହେଁ କୌଣସି ଗୋଟିଏ ସିଦ୍ଧାନ୍ତରେ ପହଞ୍ଚି ପାରିବ ନାହିଁ । ଚାକରମାନେ ତୁମକୁ ବରାବର ଠକିବେ । ପଇସା ପଇଁରେ ତୁମେ ଦୁହେଁ ଯାକ ଏତେ ଉଦାର ଯେ ତୁମର ଆୟଠାରୁ ବ୍ୟୟ ସବୁବେଳେ ଅଧିକ ହେବ ।"

ମିସେସ୍ ବେନେଟ୍ ଏହା ଶୁଣି କହିଲେ, "ତୁମେ କଅଣ କହୁଛ ? ଖରଚ ବଳି ପଡ଼ିବ କାହିଁକି ? ତାଙ୍କର ବର୍ଷକୁ ଚାରି ପାଞ୍ଚ ହଜାର ପାଉଣ୍ଡ ଆୟ ହେବ । ଅଭାବ କାହିଁକି ? ମୋର ମନରେ ଭାରି ଆନନ୍ଦ । ଜେନ୍ କଅଣ ମିଛରେ ଏତେ ସୁନ୍ଦରୀ ହୋଇଥିଲା ? ବିଙ୍ଗ୍‌ଲେଙ୍କୁ ଦେଖିଲାଦିନୁ ମୁଁ ଜାଣେ ତୁମ ଦୁହିଁଙ୍କର ମିଳନ ହେବ । ତାଙ୍କ ଭଳି ସୁନ୍ଦର ପୁରୁଷ ମୁଁ ଦେଖି ନାହିଁ ।"

ଜେନ୍ ଏଲିଜାବେଥଙ୍କ ଆଗରେ ନିଜ ଭାଗ୍ୟର ଖୁବ୍ ପ୍ରଶଂସା କରି କହିଲେ, "ଲିଜି, ତୁ ମୋର ସ୍ୱାମୀ ପରି ଗୋଟିଏ ସ୍ୱାମୀ ପାଇପାରିଲେ ଖୁବ୍ ସୁଖୀ ହୁଅନ୍ତି । କିନ୍ତୁ ତାଙ୍କ ଭଳି ଲୋକ କାହୁଁ ମିଳିବ ?"

ଏଲିଜାବେଥ କହିଲେ, "ତୁମେ ବିଙ୍ଗ୍‌ଲେଙ୍କ ଭଳି ପଚିଶ ଜଣ ମୋତେ ଦେଲେ ବି ମୁଁ ତୁମପରି ସୁଖୀ ହୋଇ ପାରିବି ନାହିଁ । ତୁମର ଚରିତ୍ର, ତୁମର ଭଲଗୁଣ ସବୁ ତ ମୋର ନାହିଁ । ତୁମପରି ସୁଖୀ ହେବାକୁ

ଆଶା କରିବ କିପରି ? ମୋ କଥା ମୁଁ ବୁଝିବି ; ଭାଗ୍ୟରେ ଥିଲେ ମିଃ କଲିନ୍‌ସଙ୍କ ଭଳି ଜଣେ ଲୋକ ପାଇବ ।"

କଥାଟା ଲୁଚି ରହିଲା ନାହିଁ । ମିସେସ୍ ବେନେଟ୍ ମିସେସ୍ ଫିଲିପ୍‌ସଙ୍କୁ କହିଲେ, ମିସେସ୍ ଫିଲିପ୍‌ସ ତାଙ୍କ ପଡ଼ୋଶୀଙ୍କୁ କହିଲେ । କେତୋଟା ଦିନ ଭିତରେ ଗାଆଁ ଟାଯାକ ରାଷ୍ଟ୍ର ହୋଇଗଲା ଯେ ମି. ବିଙ୍ଗ୍‌ଲେ ଓ ଜେନ୍‌ଙ୍କର ଶୁଭପରିଣୟ ହେବ । ଯେଉଁ ବେନେଟ୍ ପରିବାର ମାସେ ଦେଢମାସ ତଳେ ନିତାନ୍ତ ହେୟ ବୋଲି ବିବେଚିତ ହେଉଥିଲା, ଏବେ ସେହି ପରିବାର ସବୁଠାରୁ ଭାଗ୍ୟବନ୍ତ ବୋଲି ବିବେଚିତ ହେଲା ।

## ଲେଡ଼ି କାଥେରିନ୍‌ଙ୍କ କ୍ରୋଧ

ମି. ବିଙ୍ଗ୍‌ଲେ ଓ ଜେନ୍‌ଙ୍କର ନିର୍ବନ୍ଧ ହୋଇଗଲା । ଦିନେ ମି. ବେନେଟ୍‌ଙ୍କ ଘରେ ସମସ୍ତେ ବସିଛନ୍ତି ଏହି ସମୟରେ ଲେଡି କାଥେରିନ୍ ଡିବ୍‌ର୍‌ଗ ଗୋଟିଏ ଗାଡ଼ିରେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ଏଲିଜାବେଥ ବିସ୍ମିତ ହୋଇଗଲେ । ସେ ଘର ଭିତରକୁ ପଶିଗଲେ । ଏଲିଜାବେଥ ତାଙ୍କୁ ସ୍ୱାଗତ ଜଣାଇଲେ ; କିନ୍ତୁ ସେ କିଛି ଉତ୍ତର ନ ଦେଇ ବସିଗଲେ । ଏଲିଜାବେଥ ମାଆଙ୍କୁ ତାଙ୍କର ପରିଚୟ ଦେଲେ । ସାମାନ୍ୟ କଥାବାର୍ତ୍ତା ହେଲା; ସେଥିରେ ବନ୍ଧୁତ୍ୱର ସୂଚନା ନଥିଲା । ତାପରେ ବଗିଚାରେ ବୁଲିବା ପାଇଁ ଏଲିଜାବେଥଙ୍କୁ ସେ ଡ଼ାକିନେଲେ । ଗଲାବେଳକୁ ସେ ସବୁ ଘରର ଦ୍ୱାର ଟିକିଏ ଟିକିଏ ଖୋଲି ଚାହିଁଗଲେ ।

ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ଏଲିଜାବେଥଙ୍କୁ ଭଲଲାଗୁନଥିଲା । ଯାହାହେଉ ବଗିଚାରେ ପହଞ୍ଚି ଲେଡ଼ି କାଥେରିନ କହିଲେ, "ମିସ୍ ବେନେଟ୍, ତୁମେ ମୋ ଆସିବାର ଉଦ୍ଦେଶ୍ୟ ଜାଣିପାରିଥିବ ।"

ଏଲିଜାବେଥ କହିଲେ, "ଆପଣଙ୍କ ଶୁଭାଗମନର ଅଭିପ୍ରାୟ ମୁଁ ଅନୁମାନ କରିପାରୁ ନାହିଁ ।"

ବିରକ୍ତ ଭାବରେ କାଥେରିନ୍ କହିଲେ, "ତୁମେ ପେଟର କଥା ଲୁଚାଇପାର, କିନ୍ତୁ ମୁଁ ସ୍ପଷ୍ଟ କଥା କହିବି । ଦୁଇଦିନ ତଳେ ମୁଁ ଗୋଟିଏ

ଖ୍ୱରେ ସମ୍ବାଦ ପାଇଲି । ମୁଁ ଶୁଣିଲି, ତୁମ ଭଉଣୀର ଜଣେ ବ୍ରଣିଷ୍ଟ ଲୋକଙ୍କ ସାଥିରେ ବିବାହ ହେଉଛି ଓ ଅଳ୍ପ ଦିନ ପରେ ମୋର ନିଜ ପୁତୁରା ମି· ଡାର୍‌ସିଙ୍କ ସାଥିରେ ତୁମର ବିବାହ ହେବ । ମୋର ପୁତୁରାକୁ ମୁଁ ଜାଣେ । ଏ ସମ୍ବାଦ ଏକବାରେ ମିଥ୍ୟା ବୋଲି ମୋର ବିଶ୍ୱାସ । ତଥାପି କାଳେ ସତ୍ୟ ହୋଇଥିବ, ବୁଝିବାପାଇଁ ନିଜେ ଆସିଛି । ତୁମକୁ ମୋର ମତ ଜଣାଇଦେବା ମୋର କର୍ତ୍ତବ୍ୟ ।"

ଏଲିଜାବେଥ୍ କହିଲେ, "ଖବରଟା ମିଥ୍ୟା ବୋଲି ଯଦି ବିଶ୍ୱାସ, ତେବେ ଏତେ କଷ୍ଟ ସ୍ୱୀକାର କରି ଆସିବା ଦରକାର ନଥିଲା ।"

ଲେଡ଼ି କାଥେରିନ୍—ସମ୍ବାଦଟା ଯେ ମିଥ୍ୟା ତାହା ତୁମ ଦ୍ୱାରା ପ୍ରକାଶ କରାଇବା ମୋର ଅଭିପ୍ରାୟ ।

ଏଲିଜାବେଥ—କିନ୍ତୁ ଆପଣ ଆମ ଏଠାକୁ ଆସି କେବଳ ସମ୍ବାଦ ସତ୍ୟ ବୋଲି ଜାଣିପାରିବେ, ଅବଶ୍ୟ ଯଦି ସେପରି ସମ୍ବାଦ ପ୍ରକାଶ ପାଇ-ଥାଏ ।

କାଥେରିନ୍—ପୁଣି 'ଯଦି' ତୁମେ ନିଜେ ଏ ସମ୍ବାଦ ପ୍ରଚାର କରି ନାହିଁ ?

ଏଲିଜାବେଥ—ମୁଁ ଏପରି ସମ୍ବାଦ ଆଦୌ ଶୁଣିନାହିଁ ।

କାଥେରିନ୍—ଏ ସମ୍ବାଦରେ କିଛି ସତ୍ୟତା ନାହିଁ ବୋଲି କହି ପାରିବ ? ମୋ ପୁତୁରା ତୁମକୁ ବିବାହ କରିବେ ବୋଲି ପ୍ରସ୍ତାବ ଦେଇଛନ୍ତି ?

ଏଲିଜାବେଥ—ଆପଣ କହୁଛନ୍ତି ତ ଏପରି ହୋଇଥିବା ଅସମ୍ଭବ !

କାଥେରିନ୍—ହଁ ତାଙ୍କର ମସ୍ତିଷ୍କ ଠିକ୍ ଥିଲେ ସେ ଏପରି ପ୍ରସ୍ତାବ ଦେବା ଅସମ୍ଭବ । କିନ୍ତୁ ତୁମେ ତାଙ୍କୁ ଭୁଲାଇଦେଇଥିବ ।

ଏଲିଜାବେଥ୍—ଯଦି ମୁଁ ତାଙ୍କୁ ଭୁଲାଇ ବଶ କରିଥାଏ, ମୁଁ କଅଣ ତା ସ୍ୱୀକାର କରିବ ?

କାଥେରିନ୍—ମିସ୍ ବେନେଟ୍, ମୁଁ କିଏ ଜାଣ । ମୋ ସହିତ ଏପରି କେହି କଥାବାର୍ତ୍ତା କରିନାହିଁ । ମୋ ପୁତୁରାଙ୍କର ସବୁ ଭିତର ବିଷୟ ଜାଣିବାର ଅଧିକାର ମୋର ଅଛି ।

ଏଲିଜାବେଥ—କିନ୍ତୁ ମୋର ଭିତର ବିଷୟ ଜାଣିବାର ଅଧିକାର ଆପଣଙ୍କର ନାହିଁ । ମୁଁ ଆପଣଙ୍କୁ ଉପ୍ରକାର କିଛି କହିବି, ଏପରି ଆଶା କରନ୍ତୁ ନାହିଁ ।

କାଥେରିନ୍—ଏ ଯେଉଁ ବିବାହ କରିବାକୁ ତୁମର ଦୁଃସାହସ ହୋଇଛି, ତା ମୁଁ କେବେ କରାଇ ଦେବି ନାହିଁ । ମି. ଡାର୍‌ସିଙ୍କର ମୋ ଝିଅ ସଙ୍ଗେ ସମ୍ବନ୍ଧ ହୋଇସାରିଛି ।

ଏଲିଜାବେଥ୍—ତାହାହେଲେ ସେ ମୋତେ ବିବାହ ପ୍ରସ୍ତାବ ଦେଇଥିବେ ବୋଲି ଭାବୁଛନ୍ତି କିପରି ?

କାଥେରିନ୍—ସେ ସମ୍ବନ୍ଧ ଭିନ୍ନ ପ୍ରକାରର । ସେମାନେ ପିଲା ହୋଇଥିଲା ବେଳୁ ତାଙ୍କର ମାଆ ଓ ମୁଁ ସ୍ଥିର କରିଥିଲୁ ଯେ ସେ ଦୁହିଁଙ୍କର ବିବାହ ହେବ । ଆମେ ଯାହା ସ୍ଥିର କରିଛୁ ତାକୁ କଅଣ ଗୋଟାଏ ନୀଚ କୁଳର ସାମାନ୍ୟ ଝିଅ ଓଲଟପାଲଟ କରିଦେବ ? ତୁମର ଟିକିଏ ବିଚାର ନାହିଁ ? ମୋ ଝିଅ ସଙ୍ଗେ ମିଃ ଡାର୍‌ସିଙ୍କର ବିବାହ ହେବ ବୋଲି କଅଣ ଶୁଣି ନାହଁ ?

ଏଲିଜାବେଥ୍—ହଁ ଶୁଣିଥିଲି । କିନ୍ତୁ ତାଙ୍କ ମାଆ ଓ ଆପଣ ଡାର୍‌ସିଙ୍କ ଠାରୁ ମୋତେ ଛଡ଼ାଇ ନେଇ ନ ପାରନ୍ତି । ସେ ଯଦି ମୋତେ ଚାହାନ୍ତି, ମୁଁ ତାଙ୍କୁ ଗ୍ରହଣ ନକରିବି କାହିଁକି ?

କାଥେରିନ୍—କାହିଁକି ? କାହିଁକି ବୋଲି ପଚାରୁଛ ? ସମ୍ମାନବୋଧ, ଭଦ୍ରତା, ସ୍ୱାର୍ଥ ଏସବୁ ତୁମର ବିରୋଧୀ । ଆମ ଇଚ୍ଛା ବିରୁଦ୍ଧରେ ତୁମେ ଗଲେ ତୁମର ତାଙ୍କ ପରିବାରରେ କି ବନ୍ଧୁ ସମାଜରେ ସ୍ଥାନ ରହିବ ନାହିଁ । ତାଙ୍କର ଲୋକେ ତୁମକୁ ଘୃଣା କରିବେ । ଆମେ ତୁମର ନାମ ଧରିବୁ ନାହିଁ ।

ଏଲିଜାବେଥ୍—ତା ହୋଇପାରେ; କିନ୍ତୁ ମି. ଡାର୍‌ସିଙ୍କ ପତ୍ନୀ ଅନ୍ୟ ପ୍ରକାରେ ସୁଖୀ ହୋଇପାରନ୍ତି ।

କାଥେରିନ୍—ଅବାଧ, ସ୍ୱେଚ୍ଛାଚାରିଣୀ ! ସଫାକରି କହ, ତୁମ ଦୁହିଁଙ୍କର ସମ୍ବନ୍ଧ ହୋଇଛି କି ନା ?

ଏଲିଜାବେଥ୍—ନା ।

କାଥେରିନ୍—ବେଶ୍, ଏବେ କୁହ, ତୁମେ ତାଙ୍କୁ ବିବାହ ହେବା ପାଇଁ ନିବନ୍ଧ କରିବ ନାହିଁ ତ !

ଏଲିଜାବେଥ୍—ମୁଁ ସେପରି ଚୁକ୍ତି କରି ନ ପାରେ ।

କାଥେରିନ୍—ତୁମ କଥାରେ ମୁଁ ସ୍ତମ୍ଭୀଭୂତ ହୋଇ ଯାଉଛି । ତୁମଠାରୁ ଯୁକ୍ତିଯୁକ୍ତ କଥା ଆଶା କରିଥିଲି । କିନ୍ତୁ ତୁମଠାରୁ ଜବାବ ନନେଇ ମୁଁ ଯିବ ନାହିଁ ।

ଏଲିଜାବେଥ୍—ମୁଁ ସେପରି ଜବାବ ଦେଇ ପାରିବି ନାହିଁ । ମି. ଡାର୍ସିଙ୍କ ବ୍ୟକ୍ତିଗତ ବ୍ୟାପାରରେ ଆପଣଙ୍କର ହସ୍ତକ୍ଷେପକୁ ସେ ସମର୍ଥନ କରିବେ କି ନା ମୁଁ ଜାଣେନା । କିନ୍ତୁ ମୋ ବ୍ୟକ୍ତିଗତ ବ୍ୟାପାରରେ ହସ୍ତକ୍ଷେପ କରିବାର ଅଧିକାର ଆପଣଙ୍କର ନାହିଁ ।

କାଥେରିନ୍—ଆଉ ଗୋଟାଏ କଥା କହି ରଖେ । ତୁମ ସାନ ଭଉଣୀ ଯେପରି ଜଣକ ସାଥିରେ ପଳାଇ ଯାଇଥିଲା, ତାହା ମୁଁ ଜାଣେ । ତା ଭଉଣୀ ମୋ ପୁତୁରାକୁ ବିବାହ କରିବ ? ତୁମ ସେ ଭଉଣୀର ସ୍ୱାମୀ ହେଉଛି ଡାର୍ସିଙ୍କ ବାପାଙ୍କ ଚାକରର ପୁଅ । ସେ ପୁଣି ହେବ ମୋ ପୁତୁରାର ଶଢ଼ୁ; ହାୟ, ପୃଥିବୀ କଅଣ ଓଲଟିପଡ଼ିଲା ?

ଏଲିଜାବେଥ୍—ଆପଣ ମୋତେ ଯଥେଷ୍ଟ ଅପମାନ ଦେଲେଣି । ଆଉ କିଛି କହିବା ଦରକାର ନାହିଁ । ମୁଁ ଘରକୁ ଯାଉଛି ।

କାଥେରିନ୍—ତାହାହେଲେ ତୁମେ ତାଙ୍କୁ ବିବାହ କରିବାକୁ ସ୍ଥିର କରିଛ ?

ଏଲିଜାବେଥ—ମୁଁ ତାହା କହୁ ନାହିଁ । ମୋ କହିବାର କଥା, ଯାହା ମୋତେ ଭଲ ମୁଁ ତାହା କରିବେ । ସେଥିରେ ଅନ୍ୟ କେହି କିଛି କହିବାର ନାହିଁ ।

କାଥେରିନ୍—ବେଶ୍ ! କଅଣ କରିବାକୁ ହେବ ମୁଁ ଜାଣେ । ଜାଣିଥାଅ, ତୁମର ଆଶା ଦୁରାଶା ମାତ୍ର । ମୋ କଥା ରହିବ, ଏଥିରେ ସନ୍ଦେହ ନାହିଁ । ତୁମର ମାଆଙ୍କୁ କିଛି କହିବା ମୋର ଦରକାର ନାହିଁ । ମୁଁ ତୁମଠାରେ ଘୋର ଅସନ୍ତୁଷ୍ଟ ।

ଏଲିଜାବେଥ୍ ଘରକୁ ଯିବା ମାତ୍ରେ କଅଣ କଥାବାର୍ତ୍ତା ହେଉଥିଲା ବୋଲି ମାଆ ପଚାରିଲେ । ଏଲିଜାବେଥ୍ ପ୍ରକୃତ କଥା ପ୍ରକାଶ କରି ପାରିଲେ ନାହିଁ । କୌଣସିମତେ ମାଆଙ୍କୁ ଭୁଲାଇଦେଲେ ।

## ମି: ଡାର୍‌ସି ଓ ଏଲିଜାବେଥ୍

କିଛି ସମୟ ପାଇଁ ଏଲିଜାବେଥ୍ ଅସ୍ଥିର ହୋଇ ପଡ଼ିଲେ । ତାଙ୍କର ନିର୍ବନ୍ଧ ହୋଇଛି ବୋଲି ଖବର କିପରି ପ୍ରଚାର ହେଲା ସେ ବୁଝିପାରିଲେ ନାହିଁ । ସେ ସନ୍ଦେହ କଲେ ଯେ ଲିଉକାସ୍‌ଙ୍କ ଘରୁ କଲିନ୍‌ସ ଓ କଲିନ୍‌ସଙ୍କ ଠାରୁ କାଥେରିନ୍ ଶୁଣିଥିବେ ।

ତଥାପି ଲେଡ଼ି କାଥେରିନ୍ କିଛି ବିଘ୍ନ ଘଟାଇ ପାରନ୍ତି ବୋଲି ଏଲିଜାବେଥ୍‌ଙ୍କର ଆଶଙ୍କା ହେଲା । ହୁଏତ ଏହାପରେ ସେ ତାଙ୍କ ପୁତୁରା (ମି. ଡ଼ାର୍‌ସି) ଙ୍କ ପଚାରିବେ । ସେ ଯଦି ତାଙ୍କୁ ବିବାହ କରିବାକୁ ସ୍ଥିର କରି ନଥାନ୍ତି ତେବେ ଲେଡ଼ି କାଥେରିନେଙ୍କ କଥାରେ ବଦଳିପାରନ୍ତି । ଯଦି ମି. ଡାର୍‌ସି ଲଙ୍ଗ୍‌ବୋର୍ଣ୍ଣକୁ ଆଉ ନଆସନ୍ତି ବୁଝିବାକୁ ହେବ ଯେ ସେ ଲେଡ଼ି କାଥେରିନ୍‌ଙ୍କ କଥାରେ ମତ ବଦଳାଇ ଅଛନ୍ତି । ତାଙ୍କ ଆଶା ଏକବାରେ ଛାଡ଼ିଦେବା ଏଲିଜାବେଥଙ୍କର ଉଚିତ ହେବ ।

କିନ୍ତୁ କେତୋଟି ଦିନ ପରେ ମି. ବିଙ୍ଗ୍‌ଲେଙ୍କ ସହିତ ମି: ଡ଼ାର୍‌ସି ଲଙ୍ଗ୍‌ବୋର୍ଣ୍ଣରେ ଉପସ୍ଥିତ ହେଲେ । ବୁଲିବା ଉଦ୍ଦେଶ୍ୟରେ ଜେନ୍ ଓ ବିଙ୍ଗ୍‌ଲେ ଆଗେ ଆଗେ ଚାଲିଲେ । ସେ ଦୁହିଁଙ୍କ ପଛକୁ ଏଲିଜାବେଥ୍, ଡ଼ାର୍ସି ଓ କିଟି । କିଛି ଦୂର ଯିବା ପରେ କିଟି ଲିଉକାସ୍‌ଙ୍କ ଘରକୁ ଚାଲିଗଲା ।

ଡାର୍‌ସିଙ୍କୁ ଏକୁଟିଆ ପାଇ ଏଲିଜାବେଥ୍ ସ୍ପଷ୍ଟ ସ୍ୱରରେ କହିଲେ, "ମି. ଡାର୍‌ସି, ମୁଁ ସ୍ୱାର୍ଥପର । ତୁମେ ମୋ ଭଉଣୀ ପାଇଁ ଯାହା କରିଛ ସେଥିପାଇଁ ଧନ୍ୟବାଦ ।"

"ବଡ ଦୁଃଖର କଥା । ମୁଁ ବିଶ୍ୱାସରେ ଯାହା କହିଥିଲି, ତାହା ମିସେସ୍ ଗାର୍ଡ଼ିନର ତୁମକୁ କହିଦେଇଛନ୍ତି ।"

"ମିସେସ୍ ଗାର୍ଡିନରଙ୍କର କିଛି ଦୋଷ ନାହିଁ । ଲିଡ଼ିଆ ମୋତେ ସବୁ କହିଛି । ତୁମର ଦୟାପାଇଁ ମୋ ପକ୍ଷରୁ ଓ ଆମ ପରିବାର ପକ୍ଷରୁ ମୁଁ ଧନ୍ୟବାଦ ଜଣାଉଛି । ତୁମେ ଆମ ପାଇଁ ବହୁତ କଷ୍ଟ ସ୍ୱୀକାର କରିଛ ।"

"ପ୍ରକୃତ କଥା ହେଉଛି, ମୁଁ ଯାହା କରିଛି ତୁମକୁ ସୁଖୀ କରିବାପାଇଁ କରିଛି । ତୁମ ପରିବାର ପାଇଁ ମୁଁ କିଛି କରିନାହିଁ । ମୋର ତୁମ ପରିବାର ପ୍ରତି ସମ୍ମାନ ଅଛି; କିନ୍ତୁ ମୁଁ କେବଳ ତୁମ କଥା ଭାବି ଯାହା କିଛି କରିଛି ।"

ଏଲିଜାବେଥ୍ କିଛି କହିବାକୁ ପାଇଲେ ନାହିଁ । ଡାର୍ସି ପୁଣି କହିଲେ, "ତୁମେ ମୋ ଜୀବନ ନେଇ ଖେଳିବ, ଏହା ମୁଁ ଭାବୁନାହିଁ । ଗଲା ଅପ୍ରେଲ ମାସରେ ତୁମର ମୋ ପ୍ରତି ଯେପରି ମନୋଭାବ ଥିଲା, ଏବେ ଯଦି ତାହା ଥାଏ ସ୍ପଷ୍ଟ ଭାବରେ କହିଦିଅ । କିନ୍ତୁ ମୋର ତୁମ ପ୍ରତି ଥିବା ମନୋଭାବର କିଛି ପରିବର୍ତ୍ତନ ହୋଇନାହିଁ । ତୁମଠାରୁ ସଦେ ଉତ୍ତର ମୁଁ ଆଶାକରେ ।"

ଏଲିଜାବେଥ୍ ଉତ୍ତର କଲେ, "ମୋର ମନୋଭାବ ଏକଦାବାରେ ବଦଳି ଯାଇଛି । ତୁମେ ମୋତେ ସ୍ନେହ କଲେ ମୁଁ ତାହା ଆନନ୍ଦରେ ଗ୍ରହଣ କରିବି ।"

ଏହି ଉତ୍ତର ପାଇ ଡାର୍ସି ଆନନ୍ଦିତ ହେଲେ । ସେ ଯେ ଏଲିଜାବେଥଙ୍କୁ ଆନ୍ତରିକ ଭଲପାଆନ୍ତି, ଏଥିରେ ସନ୍ଦେହ ରହିଲା ନାହିଁ । କଥାବାର୍ତ୍ତାରୁ ଜଣାଗଲା ଯେ ମିସେସ୍ ଗାର୍ଡ଼ିନରଙ୍କ ଦୟାରୁ ସେ ଦୁହିଁଙ୍କର ମିଳନ ସମ୍ଭବପର ହୋଇପାରିଛି । ଡାର୍ସି ଏଲିଜାବେଥଙ୍କୁ ପାଇବାର ଆଶା ଛାଡ଼ି ଦେଇଥିଲେ; କିନ୍ତୁ ସେ ଲେଡ଼ି କାଥେରିନ୍‌ଙ୍କୁ ଯେପରି ରୂଢ଼ ଭାବରେ ମନାକରି ଦେଲେ ଯେ ସେ ଡ଼ାର୍ସିଙ୍କ ସହିତ ନିର୍ବନ୍ଧ ନକରିବାକୁ କବାବ ଦେଇ ପାରିବେ ନାହିଁ ସେଥିରୁ ତାଙ୍କର ଆଶା ପୁନରୁଜ୍ଜୀବିତ ହୋଇଥିଲା । ସେ କହିଲେ, "ମୋତେ ବିବାହ କରିବାର ଇଚ୍ଛା ନଥିଲେ, ତୁମେ ତାହା କହି କାଥେରିନଙ୍କୁ ସନ୍ତୁଷ୍ଟ କରିପାରିଥାଆନ୍ତ । ତାହା ନକରିବାରୁ ମୋପ୍ରତି ତୁମର ଅନୁରକ୍ତି ଅଛି ବୋଲି ମୁଁ ବୁଝିଲି ।"

ଏଲିଜାବେଥ ହସି ହସି କହିଲେ, "ମୁଁ ବଡ଼ ସ୍ପଷ୍ଟବାଦୀ । ତୁମପ୍ରତି ମୁଁ ଏତେ଼ ରୁକ୍ଷ ବ୍ୟବହାର ଦେଖାଇଥିଲି । ତୁମର ଆତ୍ମୀୟଙ୍କ ପ୍ରତି ରୁକ୍ଷ ନହୁଅନ୍ତି କିପରି ?"

"ତୁମେ ମୋତେ ଯାହା କହୁଥିଲ, ତାହା ମୋର ପ୍ରାପ୍ୟ । ମୁଁ ତୁମକୁ ଯେଉଁଭଳି ବ୍ୟବହାର କରିଥିଲି ତାହା କ୍ଷମଣୀୟ ନୁହେଁ । ମୁଁ ସେଦିନ କଥା ଭୁଲି ପାରିବି ନାହିଁ ।"

"ମୁଁ ସେଦିନ ଯାହା କହୁଥିଲି ସେଥିପାଇଁ ବିଶେଷ ଲଜ୍ଜିତା; ତାହା ଉପେକ୍ଷା କରି ମୋତେ କଷ୍ଟ ଦିଅନାହିଁ ।"

"ମୁଁ ବଡ଼ ସ୍ୱାର୍ଥପର । ବାପା ମାଆଙ୍କର ଏକମାତ୍ର ପୁଅ ହୋଇଥିବାରୁ ସେମାନଙ୍କ ଆଦରରେ ମୁଁ ନଷ୍ଟ ହୋଇଯାଇଅଛି । ସେମାନେ ମୋତେ ଗର୍ବୀ ଓ ସ୍ୱାର୍ଥପର ହେବାରେ ଉତ୍ସାହିତ କରିଛନ୍ତି । ଆଠବର୍ଷଠାରୁ ଅଠେଇଶି ବର୍ଷ ଯାଏ ମୁଁ ଆମ ପରିବାର ଛଡ଼ା ଅନ୍ୟ ସମସ୍ତଙ୍କୁ ହେୟ ଦୃଷ୍ଟିରେ ଦେଖି ଆସିଛି । ତୁମେ ମୋର ସେ ପ୍ରକୃତି ବଦଳାଇଦେଇଛ । ତୁମେ ମୋତେ ଖୁବ୍ ଶିକ୍ଷା ଦେଇଛ ।"

"ସେଦିନ ତୁମେ ମୋତେ ଖୁବ୍ ଘୃଣା କରିଥିବ ?"

"ନା, ଘୃଣା କରିନାହିଁ । ପ୍ରଥମେ ତୁମ ଉପରେ ରାଗିଥିଲି; ପରେ ନିଜ ଉପରେ ରାଗ ହେଲା ।"

ଦୁହେଁ ଯାକ ଗଳ୍ପ କରି କରି ଘରକୁ ଫେରିଲେ । ବିଙ୍ଗ୍‌ଲେ ଓ ଜେନ୍‌ଙ୍କର ନିର୍ବନ୍ଧ ସମ୍ବାଦରେ ସେମାନେ ଆନନ୍ଦିତ ହେଲେ । ଡାର୍‌ସିଙ୍କ ପ୍ରରୋଚନାରେ ବିଙ୍ଗ୍‌ଲେ ଜେନ୍‌ଙ୍କୁ ବିବାହ କରିବାକୁ ସ୍ଥିର କରିଯାଇଥିଲେ ।

## ଏଲିଜାବେଥଙ୍କ ବିବାହ

ସେଦିନ ରାତିରେ ଏଲିଜାବେଥ ଡାର୍‌ସିଙ୍କୁ ବିବାହ କରିବାକୁ ସ୍ଥିର କରିଛନ୍ତି ବୋଲି ଜେନ୍ ଆଗରେ ପ୍ରକାଶ କଲେ । କିନ୍ତୁ ଏଲିଜାବେଥଙ୍କର ତାଙ୍କ ପ୍ରତି ଘୃଣା ଥିବା କଥା ଜାଣିଥିବାରୁ ଜେନ୍ ତାହା ଆଦୌ ବିଶ୍ୱାସ ନକରି ଥଟ୍ଟା ମନେକଲେ । ଏଲିଜାବେଥ ବହୁ କଷ୍ଟରେ ଏହାର ସତ୍ୟତା ବୁଝାଇ ଦେଲେ ଏବଂ କହିଲେ ଯେ ଏହି ବିବାହ ଫଳରେ ସେ ଦୁହିଁଙ୍କର ଜୀବନ ସୁଖମୟ ହେବ । ଏହା ଶୁଣି ଜେନ୍ ଏଲିଜାବେଥଙ୍କୁ ଅଭିନନ୍ଦନ ଜଣାଇ ଦୁହିଁଙ୍କର ସୁଖଶାନ୍ତିମୟ ଦୀର୍ଘ ଜୀବନ କାମନା କଲେ ।

ସକାଳେ ମିସେସ୍ ବେନେଟ୍ ଝରକା ପାଖରେ ଛିଡ଼ାହୋଇଥିଲେ । ବିଙ୍ଗଲେଙ୍କ ସହିତ ଡାର୍‌ସି ଆସୁଥିବାର ଦେଖି ସେ ବିରକ୍ତ ହୋଇଉଠିଲେ । ତାଙ୍କର ଦୃଢ଼ ଧାରଣା ଥିଲା ଯେ ଡାର୍‌ସି ଜେନ୍‌ର ବିଙ୍ଗ୍‌ଲେଙ୍କ ସହିତ ବିବାହରେ ପ୍ରତିବନ୍ଧକ ସୃଷ୍ଟି କରିବେ । ସେ କହିଲେ, "ଏ ଲୋକଟା କାହିଁକି ବାରମ୍ବାର ଏଠିକି ଆସୁଛି । ଲିଜି, ତାକୁ ବୁଲିବା ବାହାନାରେ ବିଙ୍ଗ୍‌ଲେଙ୍କ ପାଖରୁ ଦୂରକୁ ନେଇଯାଆ ।"

ଏଥିମଧ୍ୟରେ ଡାର୍‌ସି ଓ ଏଲିଜାବେଥଙ୍କ ମଧ୍ୟରେ କି ମଧୁର ସମ୍ପର୍କ ସ୍ଥାପିତ ହୋଇଯାଇଥିଲା, ତାହା ମିସେସ୍ ବେନେଟଙ୍କୁ ଜଣା ନଥିଲା । ମାଆଙ୍କ କଥାରେ ତାଙ୍କର ରାଗ ଅସିଲା ସତ; କିନ୍ତୁ ସେ ଆନନ୍ଦରେ ଡ଼ାର୍‌ସିଙ୍କ ସାଙ୍ଗରେ ବୁଲିବାକୁ ବାହାରିଗଲେ ।

ବୁଲୁବୁଲୁ ଦୁହେଁ ସ୍ଥିର କଲେ ଯେ ବିବାହ ବିଷୟରେ ମି: ବେନେଟ୍‌ଙ୍କ ସମ୍ମତି ମାଗିବା ଦରକାର । ଏଲିଜାବେଥ ଡ଼ାର୍‌ସିଙ୍କ ପ୍ରତି ମାଆଙ୍କର ଘୃଣା ବିଷୟ ଜାଣିଥିଲେ ମଧ୍ୟ ତାଙ୍କ ସ୍ୱୀକୃତି ମିଳିବେ ବୋଲି ସ୍ଥିର ହେଲା ।

ସନ୍ଧ୍ୟାବେଳେ ମି. ବେନେଟ୍ ଲାଇବ୍ରେରୀକୁ ଯିବାବେଳେ ଡାର୍‌ସି ତାଙ୍କ ପଛେ ପଛେ ଗଲେ । ସେଠାରେ ଡାର୍‌ସି ତାଙ୍କର ଉଦ୍ଦେଶ୍ୟ ଜଣାଇଲେ । ମି. ବେନେଟ୍ ସମ୍ମତି ବା ଅସମ୍ମତି କିଛି ସ୍ପଷ୍ଟ ଭାବରେ ନ ଜଣାଇ ତାଙ୍କଦ୍ୱାରା ଏଲିଜାବେଥଙ୍କୁ ଡାକପଠାଇଲେ ।

ମି. ବେନେଟ୍ କହିଲେ, "ଲିଜି, ତୁ କଅଣ ବାଇଆଣୀ ହେଲୁ ? ତୁ ସବୁ ଡ଼ାର୍‌ସିଙ୍କୁ ବରାବର ଘୃଣା କରୁଥିଲୁ, ଏବେ ତାଙ୍କୁ ବିଭା ହେବୁ ବୋଲି କହୁଛୁ କିପରି ?"

ଏଲିଜାବେଥ ନିଜର ମତ ପରିବର୍ତ୍ତନ ବିଷୟ ବିଶଦ ଭାବରେ ବର୍ଣ୍ଣନା କରିଗଲେ ।

"ତେବେ ତୁ ତାଙ୍କୁ ବିଭା ହେବାକୁ ସ୍ଥିର କରିସାରିଛୁ ?"

"ହଁ ବାପା, ସେ ମୋତେ କେତେ ଭଲପାଆନ୍ତି ମୁଁ ଏବେ ବୁଝି ପାରିଛି । ଖାଲି ସେତିକି ନୁହେଁ, ସେ ଆମ ପରିବାରର ହିତାକାଙ୍କ୍ଷୀ ।

ଲିଡ଼ିଆ ଯେ ଏତେ ଲଜ୍ଜାରୁ ରକ୍ଷାପାଇଲା, ତାହା କେବଳ ଏଇ ଡ଼ାର୍‌ସିଙ୍କ ଦୟାରୁ ।”

ଏହା ଶୁଣି ମି: ବେନେଟ୍ ଆଶ୍ଚର୍ଯ୍ୟ ହୋଇଗଲେ । ସେ କପରି ନିଜ ହାତରୁ ଟଙ୍କା ଖରଚ କରି ଲିଡ଼ିଆ ଓ ଉଇକ୍‌ହାମଙ୍କର ସନ୍ଧାନ ନେଇ ସେ ଦୁହିଁଙ୍କର ବିବାହ କରାଇଦେଲେ ତାହା ଏଲିଜାବେଥ ବିଶଦ ଭାବରେ ବୁଝାଇଦେଲେ । ଶେଷରେ ମି: ବେନେଟ୍ ଆନନ୍ଦରେ ଏହି ବିବାହରେ ସମ୍ମତି ଦେଲେ ।

ଏଲିଜାବେଥ ମାଆଙ୍କ ପାଖକୁ ଯାଇ ବିବାହ ପ୍ରସ୍ତାବ ଜଣାଇ ତାଙ୍କ କାର୍ଯ୍ୟାବଳୀ ବର୍ଣ୍ଣନା କରିଗଲେ । ପ୍ରଥମେ ସେ ସ୍ତମ୍ଭୀଭୂତ ହୋଇ କିଛି ସମୟ ବସିଗଲେ । ତାଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ ।

ପ୍ରକୃତିସ୍ଥ ହେଲା ପରେ ସେ କହିଲେ “ଲିଜି, ମୁଁ ନିଜକୁ ବିଶ୍ୱାସ କରି ପାରୁ ନାହିଁ । ତାଙ୍କୁ ବିଭାହେଲେ ତୁ କେତେ ସୁଖରେ ରହିବୁ ? କେତେ ଧନ ସମ୍ପଦ, କେତେ ଗାଡ଼ି ଘୋଡ଼ା । ତା ତୁଳନାରେ ଜେନ୍‌ର ଧନ ସମ୍ପତ୍ତି କେତେ ଅବା ହେବ ? ଡ଼ାର୍‌ସି ଏତେ ସୁନ୍ଦର ଲୋକ, ମୁଁ ପୁଣି ତାଙ୍କୁ ନିନ୍ଦା କରୁଥିଲି—ମୋତେ ଧିକ୍ ! ଲିଜି, ତୁ ସହରର ବଡ଼ ମହଲା କୋଠାରେ ରହିବୁ । ତିନିଟା ଝିଅଙ୍କର ବିବାହ ହୋଇଗଲା । ଆନନ୍ଦରେ ମୁଁ ଅଧୀର ହୋଇଯାଉଛି ।”

ଏହା ପରଦିନ ଦେଖାଗଲା ମିସେସ୍ ବେନେଟ୍ ଡାର୍‌ସିଙ୍କୁ ଆଦର ସଙ୍ଗେ ଭୟ କଲାପରି ମନେହେଲା । ସେ ଡ଼ାର୍‌ସିଙ୍କ ସଙ୍ଗେ ଅତି ସଙ୍କୋଚରେ କଥାବାର୍ତ୍ତା କଲେ ।

ମି: ବେନେଟ୍ ମଧ୍ୟ ଡ଼ାର୍‌ସିଙ୍କୁ ସ୍ନେହ ଚକ୍ଷୁରେ ଦେଖିବାକୁ ଲାଗିଲେ । ସେ କହିଲେ, “ମୋର ତିନୋଟି ଯାକ ଜ୍ୱାଇଁ କେହି କାହାକୁ ଊଣା ନୁହନ୍ତି । ତେବେ ଉଇକ୍‌ହାମଙ୍କ ପ୍ରତି ମୋର ଟିକିଏ ବେଶୀ ଅନୁରକ୍ତି ରହିଛି ।”

# ✻ ସୁଖୀ ବେନେଟ୍ ପରିବାର

ଯଥାସମୟରେ ମି: ବିଙ୍ଗଲେଙ୍କ ସହିତ ଜେନ୍‌ଙ୍କର ଓ ମି. ଡାର୍‌ସିଙ୍କ ସହିତ ଏଲିଜାବେଥଙ୍କର ବିବାହ ହୋଇଗଲା । ମିସେସ୍ ବେନେଟ୍ ଖୁବ୍ ଆଡମ୍ବରରେ ବେଳେ ବେଳେ ଝିଅଙ୍କ ଘରକୁ ଯାଇ ଝିଅଜ୍ୱାଇଁଙ୍କୁ ଦେଖି ଆସୁଥିଲେ ।

ମି. ବେନେଟ୍‌ଙ୍କର ଅତି ପ୍ରିୟ ଝିଅ ହେଉଛନ୍ତି ଏଲିଜାବେଥ । ତେଣୁ ସେ ଯେତେବେଳେ ଇଚ୍ଛା ସେତେବେଳେ ପେମ୍ବର୍ଲିକୁ ଯାଇ ଝିଅ ଜ୍ୱାଇଁଙ୍କ ସହିତ କିଛି ଦିନ କଟାଇଦେଉଥିଲେ ।

ବିଙ୍ଗଲେ ଓ ଜେନ୍ ବର୍ଷକ ପର୍ଯ୍ୟନ୍ତ ନେଦର-ଫିଲ୍ଡ଼ରେ ରହିଲା ପରେ ପେମ୍ବର୍ଲିରେ ଖଣ୍ଡିଏ ଘର କିଣିଲେ । ଦୁଇ ଭଉଣୀ ପାଖାପାଖି ରହି ଖୁବ୍ ଆନନ୍ଦିତ ହେଲେ ।

କିଟି କେତେବେଳେ ଜେନ୍ ପାଖରେ, କେତେବେଳେ ଅବା ଏଲିଜାବେଥ ପାଖରେ ରହୁଥିଲା । ଲିଡ଼ିଆ ପାଖକୁ ଯିବାପାଇଁ ତାକୁ ମନା କରାଯାଇଥିଲା । ଭଉଣୀ ଦୁହିଁଙ୍କ ପ୍ରଭାବରେ କିଟିର ଆଚରଣରେ ଅତ୍ୟନ୍ତ ଉନ୍ନତି ଘଟିଲା ।

କେବଳ ମେରି ଏକୁଟିଆ ମାଆ ପାଖରେ ରହି ଗୃହକାର୍ଯ୍ୟରେ ସାହାଯ୍ୟ କରୁଥିଲା ।

ଉଇକ୍‌ହାମ ଓ ଲିଡ଼ିଆଙ୍କ ସ୍ୱଭାବରେ କିଛି ପରିବର୍ତ୍ତନ ଦେଖାଯାଇ ନଥିଲା । ସେମାନେ ବଡ଼ ଅପବ୍ୟୟୀ ଥିଲେ । ତେଣୁ ସେମାନଙ୍କର ଅଭାବ ଲାଗି ରହିଥିଲା । କ୍ରମେ ସେ ଦୁହିଁଙ୍କ ମଧ୍ୟରେ ସ୍ନେହ ଓ ପ୍ରେମର ଅଭାବ ଦେଖାଗଲା । ଡାର୍‌ସି କେବେହେଲେ ଉଇକ୍‌ହାମଙ୍କୁ ପେମ୍ବର୍ଲିକୁ ନିମନ୍ତ୍ରଣ କରୁନଥିଲେ, କିନ୍ତୁ ବେଳେ ବେଳେ ଆର୍ଥିକ ସାହାଯ୍ୟ ଦେଉଥିଲେ ।

ଡାର୍‌ସି ତାଙ୍କୁ ବିବାହ ନକରି ଏଲିଜାବେଥଙ୍କୁ ବିବାହ କରିବାରୁ ମିସ୍ ବିଙ୍ଗଲେ ବିରକ୍ତ ହୋଇଥିଲେ । କିନ୍ତୁ ପେମ୍ବର୍ଲିକୁ ଯିବାରୁ ସେ ବିରତ ନଥିଲେ । କ୍ରମଶଃ ତାଙ୍କର ବିରକ୍ତି କମିଯାଇଥିଲା ଏବଂ ଡାର୍‌ସି ଓ ଏଲିଜାବେଥଙ୍କ ପ୍ରତି ଯଥାସମ୍ଭବ ଭଦ୍ରବ୍ୟବହାର କରୁଥିଲେ ।

ଡାର୍‌ସିଙ୍କ ବିବାହରେ ଲେଡ଼ି କାଥେରିନ୍ ଭୟଙ୍କର ଅସନ୍ତୁଷ୍ଟ ଥିଲେ । କିଛି ଦିନ ଯାଏ ଦୁହିଙ୍କ ଭିତରେ କଥାବାର୍ତ୍ତା ସୁଦ୍ଧା ବନ୍ଦ ହୋଇଗଲା । ଶେଷରେ ଏଲିଜାବେଥଙ୍କ ପରାମର୍ଶରେ ଡାର୍‌ସି ଖୁଡ଼ୀଙ୍କୁ ନିମନ୍ତ୍ରଣ କରି ଖଣ୍ଡିଏ ଚିଠି ଦେଲେ । ଲେଡି କାଥେରିନ୍ କୁଣ୍ଠା ସହକାରେ ନିମନ୍ତ୍ରଣ ଗ୍ରହଣ କରି ପେମ୍ବର୍ଲି ଗଲେ । ଦୁହିଙ୍କର ବିରୋଧ ଅନେକ ପରିମାଣରେ କମିଗଲା ।

ଡାର୍‌ସି ଓ ଏଲିଜାବେଥ ଗାର୍ଡିନର ଦମ୍ପତିଙ୍କ ସହିତ ଅତି ଘନିଷ୍ଠ ସମ୍ପର୍କ ରକ୍ଷା କରିଥିଲେ । ଦୁହେଁ ସେମାନଙ୍କୁ ଆନ୍ତରିକ ଶ୍ରଦ୍ଧା ଓ ଭକ୍ତି କରୁଥିଲେ । ସେ ଦୁହିଙ୍କର ମିଳନ ଗାର୍ଡିନରଙ୍କଦ୍ୱାରା ସମ୍ପାଦିତ ହୋଇଥିବାରୁ ଦୁହେଁ ତାଙ୍କ ପ୍ରତି ଚିର କୃତଜ୍ଞ ରହିଥିଲେ ।

---

# ବିଶ୍ୱସାହିତ୍ୟ ଗ୍ରନ୍ଥମାଳା